# ମାମୁଁ

[ କିଶୋର ପାଠକପାଠିକାଙ୍କ ପାଇଁ ପ୍ରସ୍ତୁତ ସରଳ ସଂକ୍ଷିପ୍ତସାର । ]

ମୂଳଲେଖା : **ବ୍ୟାସକବି ଫକୀରମୋହନ ସେନାପତି**
ସଂକ୍ଷେପକରଣ : **ଡକ୍ଟର ଦୀନବନ୍ଧୁ ରଥ**

**ଗ୍ରନ୍ଥମନ୍ଦିର**

## ବହିଟି ବିଷୟରେ ଦୁଇପଦ

ଫକୀରମୋହନ ସେନାପତି ତାଙ୍କର ଗଳ୍ପ ଓ ଉପନ୍ୟାସଗୁଡ଼ିକ ପାଇଁ ଆମ ଓଡ଼ିଶାରେ ସୁପରିଚିତ । ଆମ ରାଜ୍ୟର ପିଲାମାନେ ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସଗୁଡ଼ିକ ପଢ଼ି ଯେପରି ବୁଝିପାରିବେ, ସେଥିପାଇଁ ଆମେ ଏ ଉଦ୍ୟମ କରିଛୁ । ଫକୀରମୋହନଙ୍କ ଭାଷା ଓ ରଚନାଶୈଳୀକୁ ଯଥାସମ୍ଭବ ରକ୍ଷାକରି, ଯେଉଁ ଅଂଶଗୁଡ଼ିକ ପିଲାମାନେ ବୁଝିବା କଷ୍ଟକର ହେବ କେବଳ ସେହି ଅଂଶମାନଙ୍କର ଭାଷା ସରଳ କରାଯାଇଛି । ବିଷୟବସ୍ତୁକୁ ସଂକ୍ଷେପ ମଧ୍ୟ କରାହୋଇଛି । ଆମେ ଆଶାକରୁ ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସର ଏ ସରଳ ରୂପ ପିଲାମାନେ ପାଠକରି ଆନନ୍ଦ ଲାଭ କରିବେ ।

—ପ୍ରକାଶକ

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରଣ : ତପନକୁମାର ମହାପାତ୍ର
**ଅପଟିମା ପ୍ରିଣ୍ଟସ୍,** କଟକ-୨

ଡି.ଟି.ପି : **କସ୍‌ମିକ୍ କମ୍ପ୍ୟୁଟର,** କଟକ-୨

ପ୍ରଥମ ମୁଦ୍ରଣ : ଜୁଲାଇ ୧୯୯୪
ପୁନଃମୁଦ୍ରଣ : ୨୦୦୧, ଜାନୁଆରୀ

ମୂଲ୍ୟ : ଟ ୨୦.୦୦

# ଦାଶରଥି ଦାସଙ୍କ ପରିବାର

''ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।'' (ଛାନ୍ଦମାଳା)

ବାବୁ ଦାଶରଥି ଦାସ କଟକ କିଲଟରୀ ମୁନ୍‌ସୀଖାନାରେ ମୋହରିର । ଦରମା ଅଳ୍ପ । ଯେ କର୍ମରେ ଥିଲେ, ସେଥିରେ ଉପୁରି ରୋଜଗାରର ଖୁବ୍ ଗୋଟାଏ ବାଟ ନ ଥିଲା । ହେଲେ କ'ଣ ହେବ, କରଣ ଘର ପିଲା—ସମୁଦ୍ର ଢେଉ ଗଣି ରୋଜଗାରିଆ ଜାତି; ଅକାଳେ ସକାଳେ ଟଙ୍କାଏ ମସାଏ ହାତପଇଠ ନହୁଏ, ଏମନ୍ତ ନୁହେଁ । ନୋହିଲେ ମାନମହତକୁ ଛଗି ସଂସାରଟା ଚଳିବ କ୍ୟାଁ ?

କଟକ ସାବ୍‌ଜାଦା ବଜାରରେ ବସା । ନିଜ ଘର ଜଗତ୍‌ସିଂହପୁର ନିକଟ ରୁକଣାଦେଈପୁର । ଗୋଟିଏ ଚାକର ନ ହେଲେ ଅଚଳ । ଚାକର ମୁନିବ ଦୁଇଜଣ ବସାରେ ଥା'ନ୍ତି । ଦାସେ ଦେଖିଲେ ଦୁଇ ଜାଗା ଘର ଚଳାଇବା ଖର୍ଚ୍ଚ ସମ୍ଭାଳିହେବନି । ପିଲାଦିଓଟି ବଢ଼ିଗଲେଣି, ଦୁଇଅକ୍ଷର ଇଂରେଜୀ ପଢ଼ିବା ଦରକାର । ଚାକିରିଆ ଜାତି, ଏଣିକି ଇଂରେଜୀ ନ ଜାଣିଲେ ଚାକିରି ଘଟିବା ମୁସ୍କିଲ । ଏହିପରି ନ' ଛ' ଭାବି ବଡ଼ ରକମ ଗୋଟିଏ ବସାଘର ଦରଘା ବଜାରରେ ଠିକ୍‌କଲେ । ଗ୍ରାମରୁ ପରିବାରମାନେ ଆସିଗଲେ ।

ପରିବାର ଭିତରେ ସ୍ତ୍ରୀ ମେନକା ଦେଈ, ବଡ଼ପୁଅ ବାନାମ୍ବର, ସାନ ନଟବର ଆଉ ସରସ୍ୱତୀ ଦେଈ । ମେନକା ଦେଈଟା ରୋଗିଣୀ—ଛ' ବିନରେ ନ' ରୋଗ । ସରସ୍ୱତୀ ଦେଈ ଘର ଚଳାନ୍ତି । ଅଳ୍ପ ଆୟ, ଦେଖି ଚାହିଁ ଚଳିବାକୁ ହେବ ତ ! ଢମ କରି ଚାକରଟାଏ ରଖିଦେଲେ । ସବୁ କଥାକୁ ଟାଣଟୁଣ । ଦାସେ ତ ମାସ ପହିଲା ତାରିଖରେ ଦରମାଟା ଆଣି ସରସ୍ୱତୀ ଦେଈଙ୍କ ଆଗରେ ଥୋଇଦେଇ ଖଲାସ । ସରସ୍ୱତୀ ଦେଈ ଇମିତି ସୁନ୍ଦର ହିସାବରେ ଘରଟା ଚଳେଇନିଅନ୍ତି ଯେ କାହରିକୁ ଉଁ-ଚୁଁ କରିବାକୁ ବାଟ ନଥାଏ । ଦାସଙ୍କ ଦୁଆରୁ ଭାଟ ଭିକାରିଟା ନିରାଶ ହୋଇ କେବେ ବାହୁଡ଼ିବାର ଦେଖାଯାଏ ନାହିଁ । ସବୁଦିନେ ଦି' ଚାରିଜଣ କୁଣିଆ ଲାଗିଛନ୍ତି । ସରସ୍ୱତୀ ଦେଈ ସକାଳୁ ଅଧରାତି ଯାଏ ଚରଖି ପରି ଘୁରୁଥିବେ, ନାକ ପୋଛିବାକୁ ତର ନାହିଁ ।

## ଉତ୍ତରରାୟ ବଂଶ

ଦାସଙ୍କର ପୂର୍ବ ତିନିପୁରୁଷଠାରୁ ତାଙ୍କ ପିତା ଗୋବିନ୍ଦରାମ ଦାସଙ୍କ ପର୍ଯ୍ୟନ୍ତ ନରିପୁର କିଲ୍ଲାର ସାମନ୍ତ ଛୋଟରାୟଙ୍କ ଘରେ ଛାମୁକରଣ ଥିଲେ । ପଞ୍ଚାଶ ମାଣ ଭୂମି ଇନାମ ରୂପେ ଲାଭକରିଅଛନ୍ତି । ସେହି ଭୂମିରୁ ଭାଗଧାନ ଆସେ । କେବଳ ସୁନିଆଦିନ ବଂଶ ଭିତରୁ କେହିହେଲେ ଜଣେ ଯାଇ ସୁନିଆ ବେଦୀରେ ବିଜେ ଛୋଟରାୟ ସା'ନ୍ତଙ୍କ ଶ୍ରୀଛାମୁରେ ଗୋଟିଏ ନୂଆ ଲେଖନ ଆଉ ଗୋଟିଏ ତାଳପତ୍ର ଭେଟି ଦେଇ ଆସନ୍ତି । ତାହା ମଧ୍ୟ ଆଜକୁ ପାଞ୍ଚବର୍ଷ ହେଲା ଦେବାକୁ ପଡୁନାହିଁ ।

ମୋଗଲ ସମ୍ରାଟଙ୍କ ଭୟରେ ଯେତେବେଳେ ପଠାଣମାନେ କତଲୁ ଖାଁକୁ ସେନାପତି କରି ଉତ୍କଳକୁ ଆସିବାପାଇଁ ସୁବର୍ଣ୍ଣରେଖା ପାରିହେଲେ, ସେତେବେଳେ ସେମାନଙ୍କ ବାଟ ବନ୍ଦ କରିବା ନିମନ୍ତେ ଉତ୍କଳର ସ୍ୱାଧୀନ ମହାରାଜାଙ୍କୁ କେତେଗୁଡ଼ିଏ ଉପାୟ କରିବାକୁ ପଡ଼ିଥିଲା । ଗୋଟିଏ ଉପାୟ ଥିଲା ରାଜ୍ୟ ମଧ୍ୟରେ ଠାଏ ଠାଏ ଘାଟି ବସାଇବା । ସେହି ଘାଟିମାନଙ୍କର ନାମ ଥିଲା ଚୌପାଢ଼ୀ । ମାତ୍ର କିଛି କାଳ ପରେ ସେସବୁ ଚୌପାଢ଼ୀ ନାମ ବଦଳରେ କିଲ୍ଲା ଅଥବା ଗଡ଼ ନାମ ଧାରଣ କଲାଣି ।

ନରିପୁର ଗଡ଼ ଏହିପରି ଚୌପାଢ଼ୀ ମଧ୍ୟରୁ ଗୋଟିଏ । ମହାରାଜା ଏଠାରେ ରଖିଥିବା ପ୍ରଥମ ସେନାପତିଙ୍କ ନାମ ବୀରବର ମଲ୍ଲ ମର୍ଦ୍ଦରାଜ ଉତ୍ତରରାୟ । ଏଥିପାଇଁ ଏହି ବଂଶ ଉତ୍ତରରାୟ ବଂଶ ନାମରେ ଜଣାଶୁଣା । ଏହି ବଂଶର ନବଘନ ଉତ୍ତରରାୟଙ୍କର ଚାରିପୁତ୍ର ଥିଲେ । ନବଘନ ଉତ୍ତରରାୟ ଭାଇମାନଙ୍କ ଭିତରେ ଝଗଡା ନ ଲାଗିବାପାଇଁ ଜାୟଗିରି ଭୂମିକୁ ଚାରିପୁତ୍ରଙ୍କ ମଧ୍ୟରେ ବାଣ୍ଟିଦେଇଥିଲେ । ନବଘନ ଉତ୍ତରରାୟ ତାଙ୍କର ଶେଷ ପତ୍ରରେ ଲେଖିଥିଲେ ଯେ, କେହି ଭାଇ ସନ୍ତାନ ନଥାଇ ମରିଗଲେ ତାହାଙ୍କ ଭାଗ ସମ୍ପତ୍ତି ବଡ଼ଭାଇ ପାଇବେ ।

ପ୍ରଥମେ ଚାରି ଭାଇ ଏକାଠି ଥିଲେ । ପରେ ଭାଇମାନଙ୍କ ଭିତରେ ମନର ଅମେଳ ଘଟିଲା । ସାନଭାଇ ଅରିଦମନ ଅଲଗା ହୋଇଯାଇ ଗଡ଼ ଫତେପୁରରେ ରହିଲେ । ତାଙ୍କ ପୁତ୍ରମାନେ ଛୋଟରାୟ ଉପାଧିରେ ଜଣାଶୁଣା । ଦ୍ୱିତୀୟ ଓ ତୃତୀୟ ଭାଇଙ୍କର ସନ୍ତାନ ନଥାଇ ମରିଯିବାରୁ ସେମାନଙ୍କ ସମସ୍ତ ସମ୍ପତ୍ତି ବଡ଼ଭାଇ ପାର୍ଥସାରଥି ପାଇଥିଲେ । ଏଥକୁ ସେ ସମ୍ପତ୍ତିର ବାରପଣି ଅଧିକାରୀ ଅଟନ୍ତି ।

ଏହି କଥାର ଆରମ୍ଭ ସମୟରେ ବଡ଼ଭାଇ ପାର୍ଥସାରଥି ଉତ୍ତରରାୟ ମରିଯିବାରୁ ଜମିଦାରି ସରକାର ବୁଝିଲେ । ତାଙ୍କର ନାବାଳକ ପୁତ୍ର ପ୍ରତାପଉଦିତ ମଲ୍ଲ ଉତ୍ତରରାୟ

ସରକାରଙ୍କ ହେପାଜତରେ ଥାଇ କଟକରେ ପାଠ ପଢୁଥିଲେ । ଅରିଦମନ ଛୋଟରାୟ ଆପଣାର ପୁତ୍ର ପିତାମ୍ବର ଛୋଟରାୟଙ୍କୁ ଇଂରେଜୀ ପଢ଼ିବାପାଇଁ କଟକରେ ରଖାଇଦେଇଥିଲେ । ପ୍ରତାପଉଦିତ ଓ ପୀତାମ୍ବର ଦୁଇଜଣ ଏକବୟସୀ– ଦୁଇଜଣ ଭିତରେ ଭାରି ପ୍ରୀତି । ଶୋଇବା, ଖାଇବା, ପଢ଼ିବା, ବୁଲିବା ସମସ୍ତ କାର୍ଯ୍ୟ ଏକାଠି କରନ୍ତି । ବଂଶ ସମ୍ପର୍କରେ ଭାଇଲେଖା– ହେଲେହେଁ ସ୍ନେହରେ ଦୁଇଜଣ ପରସ୍ପରକୁ ସଂଗାତ ବୋଲି ସମ୍ବୋଧନ କରିଥାନ୍ତି ।

## ଚାନ୍ଦମଣି

ପରିବାର କଟକ ଆସିବାର ବର୍ଷକ ପରେ ଦାଶରଥି ଦାସଙ୍କର ଗୋଟିଏ କନ୍ୟା ଜାତହେଲା । ମାଘ ପୂର୍ଣ୍ଣମୀ ତିଥିରେ ଚନ୍ଦ୍ର ଉଦୟ ହେବା ସମୟରେ ଜନ୍ମ । ପିଲା ଜନ୍ମ ସମୟରେ କୁଆଁକୁଆଁ ରଡ଼ି ଛାଡ଼ନ୍ତି– ହେଲେ କନ୍ୟାଟିର ରଡ଼ି ଠିକ୍ ବୀଣାର ଝଙ୍କାର ପରି ଲୋକେ ଶୁଣିଲେ । ପୁଅ ଜନ୍ମବେଳେ ଶଙ୍ଖ ବାଜେ, କନ୍ୟା ଜନ୍ମ ସମୟରେ ବାଜେନାହିଁ । ମାତ୍ର ସରସ୍ୱତୀ ଦେଈ ତ ଝିଅକୁ ଦେଖି ଭୋଳ, ଗୋଡ଼ ତଳେ ପଡୁନାହିଁ, ମୁଣ୍ଡଟା ମୁକୁଳା, ଶଙ୍ଖଟାଏ ଧରି ଭେଁଭେଁ କରି ଖୁବ୍ ତାନେ ବଜାଇଦେଲେ ।

ଯେମନ୍ତ ଭଲ କାରିଗର ହାତରେ ଗଢ଼ା ସୁନ୍ଦର ସୁନାର ପ୍ରତିମାଟିଏ ତଳେ ପଡ଼ି ହାତ ଗୋଡ଼ ହଲାଉଛି । ମୁଣ୍ଡର ସରୁ ରେଶମ ସୂତା ପରି ବହଳ ଛୋଟ ଛୋଟ କେଶ ସବୁ କଜ୍ଜଳ ପରି କଳା । ମୁଖଟି ପଦ୍ମଫୁଲ ପରି । ଲଲାଟ ଦର୍ପଣ ପରି ଚିକ୍‌କଣ । ଖଣ୍ଡାଧାର ପରି ନାକ । ଆଖି ଯୋଡ଼ିକ ନିର୍ମଳ ଜଳରେ ଭାସୁଥିବା ନୀଳକଇଁ ଭଳି । ପାଦ ଦୁଇଟି ସୁନ୍ଦର । ହାତ ପାପୁଲି ଅଳତା ବୋଳାହେବା ପରି ଲାଲରଙ୍ଗ । ନଖ ଛୋଟ ରୁପାଖଣ୍ଡ ପରି ଧଳା ବର୍ଣ୍ଣ । କଣ୍ଠ ଟିକିଏ ଲମ୍ବ ଏବଂ ଚମ୍ପାବର୍ଣ୍ଣ ।

ପାଞ୍ଚ ଦିନରେ ପଞ୍ଚୁଆତି ହେଲା । ଛ'ଦିନରେ ଷଠୀ ଘର । ସରସ୍ୱତୀ ଦେଈ ଦିନବେଳରୁ କାନ୍ଥରେ କାଦୁଅ ଥାପି ଗୋଟିଏ ଷଠୀ ଘର ବନାଇଲେ । ସେଥିରେ ମଣ୍ଡାଇବାକୁ ଅଢ଼ାଇ ପଣ କଉଡ଼ି ବଜାରରୁ କିଣିବାକୁ ପଡ଼ିଲା । ଷଠୀ ମା'ଙ୍କ ଭୋଗ ସକାଶେ ସାତଫଡ଼ା ଚିତଉ ପିଠା, ଚାଉଳ ବିରି ଏକାସାଙ୍ଗରେ ଭଜା, କିଛି ଗୁଡ଼, ସାତଟା ମିଠାଇ ଷଠୀ ଘର ଆଗରେ ବଢ଼ାଗଲା । ଷଠୀଦୁଛୀ ମା' ଅର୍ଥାତ୍ ଖଣ୍ଡିଏ ଶିଳପୁଆ ଖଣ୍ଡିଏ ହଳଦିଆ କନା ପିନ୍ଧି ଷଠୀ ଘର ତଳେ କାନ୍ଥକୁ ଆଉଜି ବସିଲେ । ଦେବୀଙ୍କ ମୁଣ୍ଡଉପରେ ଦୂବ ବରକୋଳି ପତ୍ର ଓ ଗୋଟାକେତେ ଫୁଲ ଦେଇ ସରସ୍ୱତୀ ଦେଈ ରାତି ଘଡ଼ିକ ସମୟରେ ପୂଜା ଆରମ୍ଭ କଲେ । ପୁଆତୀ ପିଲାଟିକୁ କୋଳରେ

ଧରି ଷଠୀଦୁଛୀ ମା'ଙ୍କ ଆଗରେ ବସିଲେ । ଏମାନଙ୍କ ମୁଣ୍ଡରେ ଧାନ ଦୂବ ପକାଇବା ସକାଶେ ସାତ ଜଣ ଅହିଅ ସ୍ତ୍ରୀ ଦରକାର । ଦାସେ ଆଗ ଦିନକଠାରୁ ଖୋଜିଲୋଡ଼ି ସାତ ଜଣ ଅହିଅ ସ୍ତ୍ରୀ ଠିକଣା କରି ରଖିଥିଲେ– ଠିକ୍ ପୂଜା ସମୟରେ ସେମାନେ ଉପସ୍ଥିତ । ପୂଜା ବଢ଼ାଇ ପ୍ରତିଜଣ ଫଡ଼ାଏ ଚିଡ଼ଉ, କିଛି ବିରି ଚାଉଳ ଭଜା, ଗୋଟାଏ ଲେଖାଏଁ ମିଠାଇ ଧରି ଆପଣା ଆପଣା ଘରକୁ ଚାଲିଗଲେ । ହଳଦୀ ପାଣିରେ ଗୋଳା ଗୋଟାଏ ତାଳପତ୍ର ଆଉ ଗୋଟିଏ ଲେଖନ ଷଠୀଦୁଛେଇ ମା'ଙ୍କ ଆଗରେ ଥୋଇଦେଇ କବାଟ ବାହାରୁ କିଳାଗଲା । ରାତିଯାଏଁ କବାଟ ଫିଟିବ ନାହିଁ । ଯେଉଁ ତାଳପତ୍ରଟି ଥୁଆହୋଇଛି, ସେଥିରେ ଷଠୀଦୁଛୀ ମା' ପିଲାଟିର ସମସ୍ତ ଜୀବନର ଭଲମନ୍ଦ କଥା ଲେଖିବେ । ସେହି ତାଳପତ୍ରରେ କୋଷ୍ଠୀ ଲେଖାଯିବ ।

ନବମ ଦିନ ଉପରଓଳି ଅବଧାନ ସଦାଶିବ ଖଡ଼ୀରତ୍ନେ ଡେବିରି କାଖରେ ତାଳପତ୍ର ପାଞ୍ଜି ବିଡ଼ାଟି ଯାକି, ଖାଇଲା ହାତରେ ଖଣ୍ଡିଏ ବାଉଁଶ ବାଡ଼ି ଧରି ହାଜର । ସରସ୍ୱତୀ ଦେଈ ପିଣ୍ଡା ଉପରେ କମ୍ବଳର ଆସନ ପାରିଦେଇ ଥାଳିଟିରେ ଅରୁଆ ଚାଉଳ ସେରେ, ଗୁଆଟିଏ, ଦୂବ, ବରକୋଳି ପତ୍ର, ଷଠୀ ଦୁଛୀ ମା'ଙ୍କ ନିକଟରୁ ତାଳପତ୍ର ଲେଖନ ଆଣି ତଳେ ଥୋଇଦେଲେ । ଖଡ଼ୀରତ୍ନେ 'ମଙ୍ଗଳଂ ଭଗବାନ ବିଷ୍ଣୁ' ଆଦି ଶ୍ଳୋକ ପଢ଼ି ତଳେ ଖଡ଼ିରେ ରାଶିଚକ୍ର କାଟିଲେ । ତହିଁରେ ଗ୍ରହନକ୍ଷତ୍ର ଯେଉଁଠି ରହିବାର ଅନେକଗୁଡ଼ିଏ ଶ୍ଳୋକ ପଢ଼ିଲେ । ତା'ପରେ ଖଡ଼ୀରତ୍ନେ କହିଲେ–ବୁଝିବା ହେଲେଟିକି ଦାସେ, କନ୍ୟା ତ ନୁହେଁ, ଏଇଟି ଦେବକନ୍ୟା–ଲକ୍ଷେ ଦଶହଜାର ମଧ୍ୟରେ ଗୋଟାଏ କୋଷ୍ଠୀ ଦେଖିଲି ଏକା । ପାଠ ଡାକୁଛି, ଏ କନ୍ୟାଟି ରାଣୀ ହେବ– ଆଉ ଏହାର ସୁନ୍ଦର ସୁନ୍ଦର ପୁଅ ହେବେ । ଧନର ସୀମା ରହିବନି । ତେବେ ଗ୍ରହସ୍ଥାନ କହୁଚି ଭାଇଯୋଗେ କଷ୍ଟ–ପତିଯୋଗେ କଷ୍ଟ । ହେଲେ କ'ଣ ହେଲା, ସେଥିର ପ୍ରତିକାର ଅଛି–ପ୍ରାୟଶ୍ଚିତ୍ତ କରିଦେଲେ ସବୁ ଦୋଷ କଟିଯିବ ।

ସରସ୍ୱତୀ ଦେଈ ପଚାରିଲେ–କ'ଣ ପ୍ରାଚିତ ଲୋଡ଼ା ?

ଖଡ଼ୀରତ୍ନେ ପ୍ରାୟଶ୍ଚିତ୍ତର ବିଧି କହିଲେ । ତା'ପରେ ଶ୍ଳୋକ ପଢ଼ି ହଳଦୀ ପାଣିରେ ରାଶିଚକ୍ର ଲିଭାଇଦେଲେ । ଥାଳିରେ ଥିବା ଚାଉଳତକ ଗାମୁଛାରେ ବାନ୍ଧି ଟଙ୍କାଟିଏ ଦକ୍ଷିଣା ଧରି ଚାଲିଗଲେ ।

ଆଜି ପିଲାଟିର ନାମ ଥୋଇବାର ଦିନ । ଅବଧାନେ କହିଯାଇଚନ୍ତି, ଏହାର ରାଶିନାମ 'ଚ' ଅକ୍ଷରରୁ ହେବ । ଦାସେ କହିଲେ– ପିଲାଟିର ଜନ୍ମଦିନ ମୋହର

ନାଜରାତି କର୍ମ ହେଲା—ପିଲାଟି ଲକ୍ଷ୍ମୀବନ୍ତ—ଏହାର ନାମ ଲକ୍ଷ୍ମୀ ହେଉ । ମା' କହିଲେ--ନା ନା, ଏହାର ନାମ ଅନ୍ନପୂର୍ଣ୍ଣା । ସରସ୍ୱତୀ ଦେଈ କହିଲେ— ସ୍ୱର୍ଗରୁ ଚାନ୍ଦ ଓହ୍ଲାଇ ଆସିଛି, ମୋ ଝିଅର ନାମ ହେବ ଚାନ୍ଦମଣି ।

## ନାଜରଙ୍କ ବସାର ହାଲଚାଲ

ନାଜରଙ୍କ ଘରଟି ସୁଖରେ ଚଳୁଛି । ଦାସଙ୍କ ପିଲା ଦିଓଟି ସ୍କୁଲରେ ପଢୁଚନ୍ତି । ପୁଅଁାଟୀ ଦୁଇ ବର୍ଷ କାଳ ବିଛଣା ଛାଡ଼ିବାକୁ ନାହିଁ । ପିଲା ଝିଅଟି ମା' ଥନବେଣ୍ଟ ଧରି ନାହିଁ– ଟେକା ପାଣିରେ ତାହାର ଜୀବନ । ଗଉଡ଼ ଯେ ଜାତି ନିୟମ କରିବାକୁ ଆଗ, ପଇସା ନେବାକୁ ବାଘ—ଦୁଧରେ ପାଣି ନମିଶାଇଲେ ଯେମନ୍ତ ସେମାନଙ୍କର ସାତପୁରୁଷ ନରକରେ ପଡ଼ିଯିବେ । ସରସ୍ୱତୀ ଦେଈଙ୍କୁ ସବୁ କଥା ଜଣା– କ'ଣ ବେରାମଟାଏ କିଣିବାପାଇଁ ଛୁଆଟିକୁ ସେଇ ପାଣି ଦେବେ ? ତେଣୁ ଦାସଙ୍କ ବସାରେ ଏବେ ଗୋଟିଏ ଦୁହାଁଳୀ ଗାଈ ବନ୍ଧା ହେଇଚି ।

ଏଣେ ପୂର୍ବଠାରୁ ବସାରେ ଅନେକ କାମ ବଳିପଡ଼ିଲାଣି । ସକାଳେ କାଉ କା'ଠାରୁ ଅଧରାତି ଯାଏଁ ଦେଈ କାମରେ ଲାଗିଛନ୍ତି । ଗୋଟିଏ ରୋଷେଇଆ ଆଉ ଗୋଟିଏ ଚାକରାଣୀ ରଖିବା ସକାଶେ ଦାସେ ଓ ମେନକା ଦେଈ ଢେର୍ ଥର କହିଲେଣି—ହେଲେ ସରସ୍ୱତୀ ଦେଈ କଥାଟା କାନରେ ପକାନ୍ତିନାହିଁ । ଦିନେ ଅପା ମେନକା ଖପା ହୋଇ କହିଲେ, ''ଆଲୋ ସର ! ତୁ କାମ କରିକରି ମରିଯା ପଛକେ ମୁଁ ଆଉ ଯଦି ତୁଣ୍ଡ ଫିଟାଏଁ ମୋ ନାକ କାଟିପକାଇବୁ ।'' ସରସ୍ୱତୀ ଦେଈ କହିଲେ, ''ଆଚ୍ଛା ଅପା ! ତୁମେ ତ ମୋ ମରଣ ପାଞ୍ଚୁଛ—ତୁମକୁ ଧୁଆଧୋଇ କରିଦେବ କିଏ—ନିତି ଔଷଧ ବାଟି ପିଆଇବ କିଏ ?'' ଦାସେ ପାଖରେ ବସି ସବୁ ଶୁଣୁଥିଲେ, କହିଲେ, ''ଏ ସରସ୍ୱତୀ ଭଗବତୀ ଦେବୀ, ନମସ୍ତେ—ତୁମେ ଅପା କଥାରେ ପଡ଼ି ମରିଯିବ ନାହିଁଟି ! ଠିକ୍ କଚେରୀ ବେଳକୁ ମତେ ଭାତ ପରଷି ଦବ କିଏ ?'' ତିନିଜଣ ମିଶି ଖୁବ୍ ଗୋଟାଏ ହସିଲେ ।

ସରସ୍ୱତୀ ଦେଈ ଲେଖାରେ ମାଉସୀ—କିନ୍ତୁ ପିଲାମାନେ ଧାଈମା' ବୋଲି ଡାକନ୍ତି । ଧାଈମା କୋଳରେ ତ ସମସ୍ତେ ବଢ଼ିଚନ୍ତି । ପିଲାମାନଙ୍କ ଶୁଣାଶୁଣିରେ ଚାକରବାକର ଗଲାଆଇଲା ସାଇପଡ଼ିଶା ସମସ୍ତେ ଡାକନ୍ତି 'ଧାଈମା' । ଦାସେ କହନ୍ତି—ଇଚ୍ଛିମାଲି ଧାଈମା ।

## ପିଲାମାନଙ୍କ ଶିକ୍ଷା

ଦାଶରଥି ଦାସଙ୍କର ଦୁଇପୁତ୍ର—ବାନାମ୍ବର ଆଉ ନଟବର । ଦୁହେଁ ଇଂରାଜୀ ସ୍କୁଲରେ ପଢ଼ନ୍ତି । ଚାନ୍ଦମଣି କରଣଘର ଝିଅ—ସେ କ'ଣ ଦାଣ୍ଡରେ ଚାଲିଚାଲି ଆଉ କେଉଁଠିକି ପଢ଼ିବାକୁ ଯିବ ? ଧାଈମା'ଙ୍କର ମନ ତାହାକୁ ଦି' ଅକ୍ଷର ପାଠ ପଢ଼ାଇବାକୁ ହେବ । ମାସକୁ ମାସ ଦରମା ନେଇ ଚାନ୍ଦକୁ ପଢ଼ାଇବାପାଇଁ ଗୋଟିଏ ଖ୍ରୀଷ୍ଟାନ ପାଠମା' ରଖାଗଲା । ଚାନ୍ଦ ତାଙ୍କ ପାଖରୁ କିତାପପଢ଼ା, କାର୍ପେଟ ଆଉ ମୋଜାବୁଣା, ସିଲାଇ, କିଛି କିଛି ଛବିଅଙ୍କା ଶିଖେ ।

ଦାସଙ୍କର ପିଲାଗୁଡ଼ିକର ଗଠନ ସୁନ୍ଦର । ରୂପ ସହିତ ଗୁଣ ସମାନ ହେଲେ ବଡ଼ ସୁଖକର ହୋଇଥା'ନ୍ତା । ବଡ଼ପୁଅ ବାନାମ୍ବର ଦେଖିବାକୁ ସୁନ୍ଦର । ତାହାର ଗୁଣ ଓ ସ୍ୱଭାବ ଭଲ । ସେ ଶୀତଳ ପ୍ରକୃତିର ପିଲା । କିନ୍ତୁ ଶିକ୍ଷା ବିଷୟରେ ମନୋଯୋଗୀ ନୁହେଁ । ସାନପୁଅ ନଟବର ବୁଦ୍ଧିଆ, ଶିକ୍ଷା ବିଷୟରେ ମନୋଯୋଗୀ, ଧୂର୍ତ୍ତ ଓ ବିଳାସୀ । ଏହି ପିଲା କାଳରେ ମଧ କୃପଣ ସ୍ୱଭାବର ପରିଚୟ ମିଳିଲାଣି । ଚାନ୍ଦମଣିର ରୂପ ଓ ଗୁଣ ଭଲ । ଶିକ୍ଷାରେ ସେ ସରସ୍ୱତୀଙ୍କର ଅନୁଗ୍ରହ ପାଇଛି । ପିଲାମାନଙ୍କୁ ଶିକ୍ଷା ଦେବା ବିଷୟରେ ଦାଶରଥି ଦାସ ଖୁବ୍ ଆଗ୍ରହୀ । ହେଲେ ପଢ଼ାଶୁଣା ଦେଖିବା ବିଷୟରେ ତାଙ୍କର ସମୟର ଅଭାବ ।

ଦିନେ ରାତ୍ରିରେ ନାଟ୍ଟର ଠା'ରେ ବସିଛନ୍ତି, ସରସ୍ୱତୀ ଦେଈ ବଡ଼ାବଡ଼ି କରିଦେଇ ପଙ୍ଖାଟାଏ ଧରି ବିଞ୍ଚୁଛନ୍ତି । ଚାନ୍ଦମଣି ବାପା ସାଙ୍ଗରେ ଖାଇବାକୁ ବସିଛି । ସେ ରାତି ଓଳିଟା ବାପା ସାଙ୍ଗରେ ଖାଏ । ଚାନ୍ଦ ଖାଉଛି । କେତେ ଭାତ ଚାରିଆଡ଼େ ବୁଣୁଛି । ଖାଉ ଖାଉ ଦଶଥର ଉଠିଯାଇ ଏଣେତେଣେ ଧାଉଁଛି । ଧାଈମା' ଧମକାଇଦେଲେ ଧାଇଁଆସି ବସିପଡୁଚି ।

ଏହି ସମୟରେ ସରସ୍ୱତୀ ଦେଈ ପଚାରିଲେ, ''ହଁ ହେ ଭାଇ ସାନ୍ତ ! ଆଜି ଉପରଓଳି ଆମ ଦୁଆରକୁ ଯେଉଁ ପିଲା ଦିଓଟି ଆସିଥିଲେ, ସେମାନେ କିଏ ?''

ଦାସେ କହିଲେ—''ସେମାନେ ଉତ୍ତରରାୟ ବଂଶର ଦୁଇ ପିଲା ।''

ସରସ୍ୱତୀ ଦେଈ ପଚାରିଲେ, ''ସେହି ଯେ ଛିଟ ଅଙ୍ଗାଟି ଲଗାଇଥିଲା, ସେଇଟି କିଏ ?''

ଦାସେ—''ଉତ୍ତରରାୟ ବଂଶର—ତାହାର ନାମ ପ୍ରତାପଉଦିତ ମଲ୍ଲ ଛୋଟରାୟ । ଆଜି ପଡ଼ିଆରେ ଫୁଟ୍‌ବଲ୍ ଖେଳ ହେଉଥିଲା, ଦେଖିବାକୁ ଯିବାପାଇଁ ବାନା ଆଉ ନଟକୁ ଡାକିବାକୁ ଆସିଥିଲେ ।''

ସରସ୍ୱତୀ ଦେଇ ପଚାରିଲେ—''ଆଉଦିନେ ଆମ ଦୁଆରକୁ ଆସିବେ ନାହିଁ ?''

ଦାସେ—ବାନା ଆଉ ନଟକୁ କହିବ, ଖେଳ ଦେଖିବାକୁ ଯିବା ବାହାନା କରି ଡାକିଆଣିବେ ।

## ପାଠଶେଷ

ଏନଟ୍ରାନ୍‌ସ ପାସ୍ ତାଲିକାରେ ଏକା ବର୍ଷ ଗେଜେଟରେ ପ୍ରତାପଉଦିତ, ପୀତାମ୍ବର ଆଉ ନଟବର ଏହି ତିନି ଜଣଙ୍କ ନାମ ବାହାରିଲା । ବାନାମ୍ବର ଥାର୍ଡ଼ କ୍ଲାସ ଟପିପାରିନାହିଁ । ଏଣେ ବୟସଟା ମଧ୍ୟ ବଳିପଡ଼ିଲାଣି ।

ଦିନେ ପାଠମା' ଆସି କହିଲେ, ''ସେ ଯାହା ଯାହା ଯେତେ ଜାଣିଥିଲେ ଚାନ୍ଦମଣିକୁ ସବୁ ଶିଖାଇ ଦେଇଛନ୍ତି, ଆଉ କିଛି ଶିଖାଇ ପାରିବେ ନାହିଁ । ଚାନ୍ଦମଣି ସବୁଥିରୁ କିଛି ଶିଖିପକାଇଲାଣି—ତା' ହାତ ଅକ୍ଷରଗୁଡ଼ିକ ମୁକ୍ତାମାଳା ।''

ଦାସେ ଦେଖିଲେ, ବାନାମ୍ବର ଚାକିରି କରିବାକୁ ଏକାବେଳକେ ନାରାଜ । ସ୍ୱାଧୀନଭାବରେ କିଛି କାମ କରିବାକୁ ତାହାର ଇଚ୍ଛା । ପୂର୍ବରୁ ଇନାମ ପାଇଥିବା ଭୂମି ଚାଳିଶ ମାଣ ଥିଲା । ଦାସେ ତାଙ୍କ ଦିହକରେ ଦୁଇ ଚାରି ଟଙ୍କା ଜମାଇ ଆଉ କୋଡ଼ିଏ ମାଣ ସରିକି ଚାଷଜମି କିଣିଥିଲେ । ସେ ସମସ୍ତ ବାନାମ୍ବର ଜିମା କରାଇଦେଲେ । ସେ ଆନନ୍ଦରେ ଚାଷ କରିବାପାଇଁ ଗ୍ରାମକୁ ଚାଲିଗଲେ । ଏହି ସମୟରେ କଟକରେ ଥାଉଁଥାଉଁ କାକଟପୁର ମୌଜା ବିଶ୍ବ ମହାନ୍ତିଙ୍କ ବଡ଼ଝିଅ ଲଳିତା ସଙ୍ଗରେ ବାନାମ୍ବରର ବିବାହ ସ୍ଥିର ହୋଇଗଲା ।

X X X · X

ଏନଟ୍ରାନ୍‌ସ ପାସ୍ ସମୟକୁ ପ୍ରତାପଉଦିତ ମଲ୍ଲ ଉତ୍ତରରାୟଙ୍କର ନାବାଳକୀ ଫିଟିଥିଲା । ସେ ଗ୍ରାମକୁ ଚାଲିଯାଇ କିଲ୍ଲାର କାର୍ଯ୍ୟ ବୁଝାବୁଝି କରିବାକୁ ଲାଗିଲେ । ପୀତାମ୍ବରଙ୍କ ବାପ ଅରିଦମନ ଛୋଟରାୟଙ୍କର ଇଚ୍ଛା ପୁଅ ତାଲୁକ ବୁଝାବୁଝି କରୁ । ମାତ୍ର ପୀତାମ୍ବରର ଇଚ୍ଛା• ଅନ୍ୟରୂପ । ବାପା ଥାଉଁଥାଉଁ ମୁଲକ ବୁଝିବାକୁ ତାଙ୍କର ଇଚ୍ଛା ନୁହେଁ । ସେ ପେସ୍କାରୀ କର୍ମରେ ଯୋଗ ଦେଇ କଟକରେ ରହିଲେ । ରଜାପୁଅ ପରି ଯୁବାଟା, ଏପରି ଛୋଟକୁରିଆ କାମରେ ରହିବା ସମ୍ମାନର କଥା ନୁହେଁ । ଚାକିରୀ ହେଲା ତ କ'ଣ ହେଲା—ହୋଇଥା'ନ୍ତା ଗୋଟିଏ ହାକିମ-ହୁକୁମା ଭଳିଆ ଚାକିରି—ମନାନଥିଲା—ଏଇଟା କ'ଣ ନା ଅମଲା ? ପୀତାମ୍ବରଙ୍କ ଉଦ୍ଦେଶ୍ୟ ହେଲା ଅନ୍ୟ ରକମ । ଟଙ୍କା ରୋଜଗାର ପାଇଁ ଚାକିରି ନୁହେଁ—ଗୋଟାଏ ଧରାବନ୍ଧା କାର୍ଯ୍ୟ ନ

ଥିଲେ ଆଳସ୍ୟ ଆସି ମାଡ଼ିବସିବ । ଆଉ ଗୋଟିଏ କଥା, ମାଲିମକଦ୍ଦମାପାଇଁ ନାନା ଶ୍ରେଣୀର ଲୋକ କଚେରୀକୁ ଯିବା ଆସିବା କରିବେ । ସେ ଯୋଗୁଁ ଦେଶର ଭିତର ଅବସ୍ଥା ଜାଣିହେବ । ଲୋକଙ୍କ ଚଳଣି ଓ ଚରିତ୍ର ତାଙ୍କର ଜାଣିବାକୁ ଇଚ୍ଛା । ତୃତୀୟ କଥା, ହାକିମ-ହୁକୁମାଙ୍କ ଆଗରେ ସବୁବେଳେ ରହିଲେ, ଆପଣା ଜିଲ୍ଲାର ଏବଂ ଆଉ ଲୋକଙ୍କର ଉପକାର କରିପାରିବେ ।

ଚାକିରିଟାଏ ହେଲେ କ'ଣ ହେବ, କଟକରେ ନାମ ଡାକ । ଆପଣା ମାନମହତକୁ ତ ଜଗି ଚଳିବାକୁ ହେବ ? ସେହିପରି କୋଠାଘର, ଚାକରବାକର ବନ୍ଦୋବସ୍ତ ଭଲକରି ନକଲେ ନୁହେଁ । ଅଧିକ ଟଙ୍କା ଖରଚ ଦରକାର, ଦରମା କେତେଟା ଟଙ୍କା କି ସେଥିକି ପାଏ ? ବାପା ଅରିଦମନ ଛୋଟରାୟ ମାସକୁ ମାସ ଟଙ୍କା ପଠାଇଦିଅନ୍ତି । ଠା' ସକାଶେ ଭଲ ବାସନା ମୁଗଜାଇ, ଘିଅ ପ୍ରଭୃତି ଜିଲ୍ଲାରୁ ଆସେ । ବସା ଖରଚ ଛାଡ଼ି ତାଙ୍କର ନିଜର ଗୋଟାଏ ଛୋଟ ପୁସ୍ତକାଳୟ ଅଛି । ଅନେକ ପ୍ରକାର ପୁସ୍ତକ ଓ ପତ୍ରିକା ଆଦି କିଣିବାକୁ ହୁଏ । ସେଥିସକାଶେ ଅନେକ ଟଙ୍କା ଦରକାର । ସବୁ ବାପା ଦେଇଥା'ନ୍ତି ।

## ଚାନ୍ଦମଣିର ବିବାହ ପ୍ରସ୍ତାବ

ବଡ଼ପୁଅ ବାନାମ୍ବରର ମଙ୍ଗଳକୃତ୍ୟ । ଦାସେ ସେଥିପାଇଁ ଦଶମାସର ଛୁଟିନେଇ ନିଜ ଗ୍ରାମ ରୁକୁଣାଦେଇପୁରରେ ଅଛନ୍ତି । ବାନାମ୍ବରର ମଙ୍ଗଳକୃତ୍ୟ ସୁରୁଖୁରୁରେ ବଢ଼ିଗଲା । ହାତରେ କିଛି କାମ ନାହିଁ । ଦାସେ ନିଶ୍ଚିନ୍ତ ମନରେ ଘରେ ବସି ଆରାମ କରୁଛନ୍ତି । ଦିନେ ଉପରଓଳି ମେଲାରେ ସଉପ ପକାଇ ବସିଛନ୍ତି । ମେନକା ଦେଈ ଓ ସରସ୍ୱତୀ ଦେଈ ପାଖରେ । ସରସ୍ୱତୀ ଦେଈ କହିଲେ—''ହଁ-ହେ ଭାଇସାନ୍ତ ! ତୁମେ ତ ଉଛୁଣି ତୁଚ୍ଛାଟାରେ ଘରେ ବସିଛ—ଏତେବେଳେ ଚାନ୍ଦର ମଙ୍ଗଳକୃତ୍ୟ ବିଷୟରେ କିଛି ବୁଝାବୁଝି କଲେ ଭଲ ହୁଅନ୍ତା ନାହିଁ ?''

ଦାସେ କହିଲେ—ସେଥିଲାଗି ଏତେ ତରବର କ୍ୟାଁ ? ଚାନ୍ଦ ଏପରି କ'ଣ ଥୁବ୍‌ଡ଼ୀ ଝିଅ ଘରେ ବସିଛି ଯେ ଚଞ୍ଚଳ ହୋଇପଡ଼ିବା ? ଏହି ଗଣିପକାଅନା, ଚାନ୍ଦର ଜନ୍ମଦିନରେ ମୋର ନାଜରାତି ଚାକିରି—ହାତଗଣନ୍ତା ହେଲା ଚଉଦବର୍ଷ ଛ' ମାସ ସାତଦିନ । ଆମ କରଣକୁଳରେ କୋଡ଼ିଏ ବାଇଶ ବର୍ଷର ଅଭିଆଡ଼ୀ ଝିଅ ବସିଛନ୍ତି, ଦେଖୁନାହଁ କି ?

ସରସ୍ୱତୀ ଦେଈ—କୋଡ଼ି କୋଡ଼ି ବର୍ଷର ଅଭିଆଡ଼ୀ ଝିଅ ଅଛନ୍ତି ସତକଥା, ହେଲେ ମୋ ମନକୁ କଥାଟା ପାଏ ନାହିଁ ।

ଦାସେ—ଜାଣିଲ, ଏଇଟା ହେଲା ପ୍ରଜାପତି ଘଟସୂତ୍ର କଥା ।

ସରସ୍ୱତୀ କହିଲେ—ପ୍ରଜାପତି କ'ଣ ଗାଁ ଗାଁ ବୁଲି କନ୍ୟାବର ଖୋଜୁଥା'ନ୍ତି ? ତୁମେ ଖୋଜାଖୋଜି କରିବ—ପ୍ରଜାପତି ଘଟାଇଦେବେ ସିନା !

ମେନକା ଦେଈ କହିଲେ—ତୁମେମାନେ ଯାହା ଇଚ୍ଛା ତାହା କର, ହେଲେ ଭଲ ପାତ୍ର ନ ହେଲେ ମୋର ରାଜି ନାହିଁ ।

ଦାସେ—ତୁମେ କ'ଣ ମନରେ କରିଛ ଯେ ମୁଁ ତୁନିହୋଇ ବସିଛି ? ଆଖି ଫେରାଇ ଦେଖିଲିଣି, ଉଛୁଣି କରଣକୁଳରେ ସିମିତିକା ପିଲା ନାହିଁ ।

ସରସ୍ୱତୀ—ମୁଁ ବି ମନେମନେ ଖୋଜୁଛି । ଆଚ୍ଛା, ଭାଇ ସା'ନ୍ତ, ଖଣ୍ଡାଇତ ମହାନାୟକ କୁଳରେ ତ ଚଳେ ।

ଦାସେ—ହଁ, କିଁ୍ୟା ନହେବ ?

ଏତିକିବେଳେ ଚାନ୍ଦମଣି ଅଳ୍ପଦୂରରେ ବସିଥିଲା । ବିଭାକଥା ଶୁଣି ତା' ମୁହଁ ଲାଜରେ ରଙ୍ଗାପଡ଼ିଗଲାଣି । ପଳାଇଯିବାର ବାଟ ନାହିଁ । ତୁଚ୍ଛାଟାରେ ତା' ପୋଷା ବିରାଡ଼ିର ଲାଞ୍ଜ କାନ ଧରି ଭିଡୁଛି । କେଉଁଦିନ ସେ ଧାଈମା'ଙ୍କ ଦୁଧହାଣ୍ଡି ଗଡ଼ାଇ ଦେଇଥିଲା ବା ମାଛ ଖାଇଦେଇଥିଲା—ସେ କଥା କହି ଦୁଇ ଚାପୁଡ଼ା ଲେଖାଏଁ ପିଟୁଚି । ଧାଈମା' କେବଳ କଥାରେ ଲାଗିନାହାନ୍ତି—ଚାନ୍ଦମଣିର ସେତେବେଳର କାର୍ଯ୍ୟମାନଙ୍କୁ ଦେଖୁଛନ୍ତି । ବିଭା ସମ୍ବନ୍ଧରେ ଚାନ୍ଦର ମନୋଭାବ ଜାଣିବା ଦରକାର । ଧାଈମା' ଦେଖିଲେ, ଚାନ୍ଦମଣିର କାନ ଯେମନ୍ତ କଥା ଶୁଣିବା ପାଇଁ ପ୍ରସ୍ତୁତ । ଧାଈମା' କ'ଣ ବୁଝିଲେ ତାଙ୍କ ମୁହଁରେ ଆନନ୍ଦର ଚିହ୍ନ ଦେଖାଗଲା ।

ଠିକ୍ ଏହି ସମୟରେ ଚାକର ମୁକୁନ୍ଦା ଆସି ଖବର ଦେଲା, ଗଡ଼ ନରିପୁର ଉଆସରୁ ପୁରୋହିତ ଆସିଛନ୍ତି । ଯେଉଁ ବ୍ରାହ୍ମଣ ଆସି କଟକରେ ଢେର୍ ଥର ଦେଖାକରୁଥିଲା, ସେ ବ୍ରାହ୍ମଣ ମଧ୍ୟ ସାଙ୍ଗରେ ଆସିଛି । କ'ଣ ମନକୁ ଆସିଲା, ଧାଈମା' ଧଡ଼କରି ଉଠିପଡ଼ି ଭୌଁ ଭୌଁ କରି ଶଙ୍ଖଟା ବଜାଇବାକୁ ଲାଗିଲେ । ଦାସେ ଦାଣ୍ଡ ମେଲାରେ ସତରଞ୍ଜି ପାରିଦେଇ ଅତିଥିମାନଙ୍କୁ ଖୁବ୍ ବିନୟରେ ଆଦର ଅଭ୍ୟର୍ଥନା କଲେ । କରଣ ଘର ମର୍ଯ୍ୟାଦା ରଖି ଖଣ୍ଡିଏ ସଫା ଥାଳିରେ ପାନ ଓ ମସଲା ଆଣି ଥୋଇଦେଲେ । କଥାବାର୍ତ୍ତା ପରେ ଦାସେ ହଳଦୀବୋଳା ଖଣ୍ଡିଏ ଲେଖା ତାଳପତ୍ର ବ୍ରାହ୍ମଣଙ୍କ ହାତକୁ

ବଢ଼ାଇଦେଲେ । ସେମାନେ ମେଲାଣି ନେବା ଉତ୍ତାରେ ସରସ୍ୱତୀ ଦେଈ ହସିହସି ପହଞ୍ଚିଲେ । ଦାସେ କହିଲେ, ''ଦେଖ ସରସ୍ୱତୀ, କଥାଟା ଯେମନ୍ତ ଉଛୁଣି ଫୁଟିଆରା ନହୁଏ ।''

ତହିଁ ଆରଦିନ ରାତି ନପାହୁଣୁ ଗାଁ'ଯାକ ଚହଳ ପଡ଼ିଗଲା ଯେ ନରିପୁର ଉତ୍ତରରାୟ ସା'ନ୍ତଙ୍କ ସାଙ୍ଗରେ ଚାନ୍ଦମଣିର ବିବାହ କଥାବାର୍ତ୍ତା ଚାଲିଛି । କେହି କହିଲେ, ବିବାହ ହେବାର ସ୍ଥିର । ଭୀମା ମା' କହିଲା—''ନିର୍ବନ୍ଧ ଦିନ ଦାସଙ୍କ ଘରେ ଢେର୍ ଢେର୍ ଲୋକ ଜଳପାନ କଲେ । ଭୀମା ପଛରେ ଯାଇ ପହଞ୍ଚିଲା, ଖଜା ପିଠାପଣା ଢେର୍ ହୋଇଥିଲା, ଦେଢ଼ଶ' ଲୋକରୁ ଊଣା ନୁହେଁ'' । ଆଉ ଗାଁରେ କଥା ଉଠିଲା, ମକର ସତର ଦିନକୁ ଲଗ୍ନ ସ୍ଥିର । ଗାଁ ଟୋକୀଗୁଡ଼ାଙ୍କ ଡରରେ ଚାନ୍ଦମଣି ଦିନଯାକ ଘରୁ ବାହାରି ନାହିଁ ।

## ଚାନ୍ଦମଣିର ମଙ୍ଗଳକୃତ୍ୟ

ଶ୍ରୀ ଶ୍ରୀ ଶ୍ରୀ ପ୍ରତାପଉଦିତ ମଲ୍ଲ ଉତ୍ତରରାୟଙ୍କ ସହିତ ଚାନ୍ଦମଣିର ବିବାହ ବଢ଼ିଗଲାଣି । ପୁରୁଣା ପୁରୁଣା ବୁଢ଼ାମାନେ କହନ୍ତି, ଏପରି ବିବାହ ଉତ୍ସବ କେବେ ଦେଖାନଥିଲା । ବିଭା ଆଠଦିନ ଆଗରୁ ସା'ନ୍ତ ଦାଶରଥି ଦାସେ ଗ୍ରାମରେ ଘର ଘର ବୁଲି ନିମନ୍ତ୍ରଣ କରି ଆସିଥିଲେ । ସରସ୍ୱତୀ ଦେଈ ସ୍ତ୍ରୀମାନଙ୍କ ହାତଓଠଧରି, ମା'ଲୋ-ଅପାଲୋ-ଝିଅଲୋ, ଡାକି କହିଲେ—ଚାନ୍ଦ ତୁମମାନଙ୍କ ଝିଅ, ତୁମେମାନେ ଯାଇ ତାହାର ମଙ୍ଗଳକୃତ୍ୟ କରାଇବ ।

ସମସ୍ତେ କହନ୍ତି, ସରସ୍ୱତୀ ଦେଈଙ୍କ ଯୋଗୁଁ କାମ ଉଠିଲା । ପଚରା ନାହିଁ, ଓଚରା ନାହିଁ, ଯାହା ଆଗରେ ଯେଉଁ ପାଇଟିଟା ପଡୁଛି ସେ ତାକୁ ପେଲିନେଉଛି । ସମସ୍ତେ ମଣିଛନ୍ତି ଆପଣାର କାମ । ବୋଇଲା, ''ନଦେବୁ ଧନ, କହିବୁ ଦିବ୍ୟ ବଚନ ।'' ସରସ୍ୱତୀ ଦେଈଙ୍କ ମିଠା କଥାରେ ସମସ୍ତେ କିଣା ।

ଦାସଙ୍କ ଘରର ଚଳାଚଳ କଥା ଉତ୍ତରରାୟ ଉଆସକୁ ଅଜଣା ନଥିଲା । ସଦର ଛାମୁକରଣ ରଙ୍ଗାଧର ପଟ୍ଟନାୟକ ଦିନେ ରୁକୁଣାଦେଈପୁରକୁ ଆସି ଦାସଙ୍କ ସହିତ କଥାଭାଷା ହୋଇଥିଲେ । ସେଥିର ସାରମର୍ମ ଏହି—ବରଙ୍କ ଗହଣରେ ଢେର୍ ଲୋକ ଆସିବେ—ସେମାନଙ୍କ ଚଳାଚଳ ଭଳିଆ ଉଆସରୁ କିଛି ଆସିଲେ ଭଲ ହୁଅନ୍ତା ନାହିଁ ? ପଟ୍ଟନାୟକେ କରଣ ପିଲା, ଜାଣିବା ଶୁଣିବାରେ ପୁରୁଣା ଲୋକ—ସବୁ କୁଳ ମହତକୁ

ଢଗି କଥା କହିବା ତାଙ୍କଠାରୁ ଆଉ ଅଧିକ କାହାକୁ ଜଣା ? ସେ କ'ଣ ଟାଉକରି ଗୋଟାଏ କଥା କହି ବସନ୍ତେ ଯେ ଉତ୍ତରରାୟ ସା'ନ୍ତ ତୁମକୁ ସାହାଯ୍ୟ କରିବେ ? ଦାସେ ଆପଣା ବଳକୁ କଷି ଧସପସ ହେଉଥିଲେ । ଏଣେ ସରସ୍ୱତୀ ଦେଈଙ୍କ କାନରେ ଯିମିତି କଥାଟା ବାଜିଗଲା, ସେ କହିଲେ—ନାହିଁ—ନାହିଁ—ସେ କଥାଟା କେବେ ହେବାର ନୁହେଁ ।

ସରସ୍ୱତୀ ଦେଈଙ୍କ ବାପ ଅମଳରୁ ଆଉ ଶଶୁର ଅମଳରୁ କିଛି ଜମିଜମା ଥିଲା—ଗୁକୁଣାଦେଈପୁରକୁ ଆସି ସେସବୁ ବିକିବାକି ଟଙ୍କାଟା ଆପଣା ପାଖରେ ରଖିଥିଲେ । ସବୁ ବାହାର କରିପକାଇଲେ । ସରସ୍ୱତୀ ଦେଈ କହିଲେ, ''ଆଉ କେଉଁ ଦିନକୁ—କାହାପାଇଁ ? ଯାହାଲାଗି ଛଞ୍ଚିଥିଲି ତା' ପିଛେ ଯାଉ ।''

ଦେଶ ବେଭାର ବା ଆପଣା କୁଳମାନଙ୍କୁ ନଅନାଇଁ ସବାରି ଖଣ୍ଡକରେ ବସି ସରସ୍ୱତୀ ଦେଈ ଚାନ୍ଦମଣି ଗହଣରେ ଗଡ଼ ନରିପୁରକୁ ଚାଲିଗଲେ ।

## ନଟବରର ବିବାହ

ଛୁଟିର ମିଆଦ ସରିଗଲା । ନାଜର ଦାଶରଥି ଦାସେ ଚାଲିଆସିଲେ । ସାଙ୍ଗରେ ଅଇଲେ କେବଳ ସାନପୁଅ ନଟବର । ନଟବର ବର୍ତ୍ତମାନ କଟକ କିଲଟରୀ ମୁନ୍‌ସୀଖାନାର କିରାଣି କାମ ଶିଖୁଛନ୍ତି । ଦୁଇତିନି ବର୍ଷ ବହିଗଲାଣି, ନଟବର ବର୍ତ୍ତମାନ ପିଲାଟିଏ ନୁହନ୍ତି, ମୁଣ୍ଡକୁ ହାତ ପାଇଲାଣି ।

ସଞ୍ଜ ବାଜିଲା ତ ସେ ବଜାରବୁଲି ବାହାରିଲେ । ଦିନେ ଦିନେ ବସାକୁ ଫେରିବାକୁ ରାତି ଢେର୍ ହୋଇଯାଏ । ଦାସେ ଦିକ୍‌ଦାର ହୋଇ କିଛି କଥା କହିଲେ, ମୁହେଁ ମୁହେଁ ଠୋ ଠୋ ଜବାବ ଦେଇପକାନ୍ତି । ବାପର ନିତାନ୍ତ ଅବାଧ । କାମ-ପାଇଟି ଭଲମନ୍ଦର କିଛି କଥା କହିଲେ ମୁହଁ ମୋଡ଼ିଦେଇ ଚାଲିଯା'ନ୍ତି । ବନ୍ଧୁବାନ୍ଧବ ପାଞ୍ଚଜଣ ବି ଆସି କହିଗଲେଣି—ଭେଣ୍ଡିଆ ପୁଅ, କଟକ ପରା ଜାଗା, ସେମାନେ କି କଥାରେ ସମ୍ଭଳା ପଡ଼ନ୍ତି ? ଦାସେ ବୁଝିଲେ କଥାଟା ମିଛ ନୁହେଁ ।

କନ୍ୟା ଖୋଜା ଚାଲିଲା । ସେଇଟା କ'ଣ ପଦାରେ ପଡ଼ିଛି, ଧାଇଁଯାଇ ଗୋଟାଇ ଆଣିଲେ ହେଲା । ଦଶ ଜାଗାରେ ଦଶକଥା ଚଳିଲା—ଘର ଭଲ ତ କନ୍ୟା ଭଲ ନୁହେଁ—କେଉଁଠି ଖୁବ୍ ବଡ଼, କେଉଁଠି ଖୁବ୍ ସାନ, ହେଲାତ କୋଷ୍ଠୀ ଅମେଳ । ଶେଷରେ ଜବାବ ଅଇଲା ହରିଶପୁର କିଲା ଛକଡ଼ି ମହାପାତ୍ରଙ୍କ ଘରୁ । କନ୍ୟାଟି ଘରଯୋଗ୍ୟା—ବୟସ କୋଡ଼ିଏ । କୋଷ୍ଠୀ ଅଣାଇ ବୁଝାବୁଝି ହେଲା । ଶ୍ରୀ ନାୟକେ କହିଲେ—

''ବୁଝିବା ହେଲେ ଦାସେ, ଭଲ କୋଷ୍ଠୀ ମେଳକଟା ଦେଖିଲି । ସ୍ୱାମୀ-ସ୍ତ୍ରୀ ଏକା ମନରେ ଚଳିବେ । ଧନ ଦିନେ ଛାଡ଼ ହେବ ନାହିଁ । ଚନ୍ଦ୍ର ମହାଦଶା ପଡ଼ିଲା ବୋଲି ଜାଣ । ଏହି ଦଶା ପଡ଼ିଲେ ସେ ଗୋଟାଏ ରାଜରାଣୀ ହୋଇ ବସିବ ।''

ସବୁହେଲା, ହେଲେ କନ୍ୟାଟିର ବାପା ଛକଡ଼ି ମହାନ୍ତି ଗୋଟାଏ ଜମିଦାର ଘରେ ପିଆଦା ଥିଲେ—ଚାରିବର୍ଷ ହେଲା ମରିଛନ୍ତି । ବିଧବା ମା' ଦରିଦ୍ର । ଅଠର ବର୍ଷର ଭେଣ୍ଡିଆ ପୁଅ ଘରେ । ତାଙ୍କ ମନଟା କିମିତିକା ପଛ ପଛ ହେଲା । ଏଣେ ନଟବର ହଟ ଧରିଲା—ସେହି କନ୍ୟାକୁ ବିଭାହେବ—ରାଜରାଣୀ ହେବ, ଆଉ କ'ଣ ଲୋଡ଼ା ?

ବାନାମ୍ବର ଆଉ ଚାନ୍ଦମଣିର ବିଭାଘର ଖରଚରେ ଦାସେ ଏଯାଏଁ ସଳଖି ବସିପାରିନାହାନ୍ତି । ଗାଁରେ ବିଭାକଲେ ଖରଚ ବେଶୀ । ତୁଲାଣ ଭଳି କାର୍ଯ୍ୟଟାଏ କରିଦେଲେ ହେଲା । କଟକ ତୁଳସୀପୁରରେ ଗୋଟିଏ ଘର ଭଡ଼ାନେଇ ବିଭାଘର ବଢ଼ାଇଦେଲେ ।

## ଶ୍ରୀ ଶ୍ରୀ ଶ୍ରୀ ପ୍ରତାପଉଦିତ ମଲ୍ଲ ଉତ୍ତରରାୟ

ନୂତନ ଉତ୍ତରରାୟଙ୍କ ବୁଝାମଣାରେ ପ୍ରଜାପାଟକଙ୍କ ଆନନ୍ଦ କହିଲେ ନସରେ । ଉତ୍ତରରାୟ ମଫସଲ ଗାଁକୁ ଗାଁ ବୁଲି ଦେଖିଲେ । ଜମିଗୁଡ଼ାକ ବଡ଼ କଳିନ୍ଦ—ବାରଫସଲି । ହେଲେ କ'ଣ ହେବ ପ୍ରଜାମାନେ ଗରିବ । ଉତ୍ତରରାୟ ଗାଏଁ ଗାଏଁ ବୁଲି ପ୍ରଜାମାନଙ୍କ ଅବସ୍ଥା ଆପେ ଦେଖନ୍ତି, ଗୁହାରି ଶୁଣନ୍ତି । ଅଳ୍ପ ସୁଧରେ ଟଙ୍କା କରଜ ଦିଅନ୍ତି । ଆଗେ ମାଲିମକଦ୍ଦମାରେ ପ୍ରଜାମାନେ କଟକକୁ ଧାଡ଼ି ଛୁଟିଥିଲେ, ଏବେ ସମସ୍ତେ ଉତ୍ତରରାୟଙ୍କ ସଦର କଚେରିରେ ହାଜର । ବିନା ଖର୍ଚ୍ଚରେ ଅଳ୍ପଦିନ ମଧ୍ୟରେ ନ୍ୟାୟ ପାଇବେ—ଘରୁ ଟଙ୍କା ସାରି ହଇରାଣ ହେବେ କାହିଁକି ?

ନୂଆ ଉତ୍ତରରାୟଙ୍କ ଅମଳରେ ଉଆସ ଭିତର ଅବସ୍ଥା ମଧ୍ୟ ବଦଳିଗଲାଣି । ଉତ୍ତରରାୟଙ୍କ ତିନିପୁରୁଷର ପୋଇଲୀ ବୁଢ଼ୀ, ଟୋକୀ ତ ଢେର୍ ଅଛନ୍ତି—ତାଙ୍କୁ ଛାଡ଼ି ନୂଆ ଉତ୍ତରରାୟଙ୍କ ଖଟଣି ପୋଇଲୀ ଅଲଗା । ପୋଇଲୀମାନଙ୍କ ପରେ ବ୍ରାହ୍ମଣ, କରଣ, ଖଣ୍ଡାଏତ ଭଲଭଲ ଲୋକଙ୍କ ଘରର ନିରାଶ୍ରୟା ବିଧବା—ଯେଉଁମାନେ ଘରେ ପଡ଼ି ମରିବେ ପଛକେ ଦାଣ୍ଡକୁ ବାହାରିବେ ନାହିଁ । ସାଆନ୍ତମାନେ ଖୋଜିଲୋଡ଼ି ସେମାନଙ୍କୁ ଉଆସରେ ଆଶ୍ରୟ ଦେଇଛନ୍ତି । ସେ ପ୍ରସ୍ତଟା କଳିଆ ଆଉ ଅଳିଆରେ ପୂରିଥିଲା । ଏଣିକି ଧାଈମା'ଙ୍କ ଡରରେ ଆଉ କଳି କରିବାର ବାଟନାହିଁ—ଅଳିଆଗୁଡ଼ାକ ଏକାବେଳକେ ବାଡ଼ି ଦୁଆରେ ଦାଖଲ ।

ବେଳ ଦୁଇଘଡ଼ି ଥାଉଁ ଉତ୍ତରରାୟ ଛାମୁଙ୍କୁ କେହି ବାହାର ବିଜେ ଦେଖେ ନାହିଁ । ଚାନ୍ଦମଣି ମଣିମା ଆଗେ ଲେଖିପଢ଼ି ଜାଣିଥିଲେ—ଏଣିକି ରୋଜ-ରୋଜ ଚର୍ଚ୍ଚାରେ ଢେର୍ ଶିଖିଗଲେଣି । ଶ୍ରୀଛାମୁ ଆଉ ମଣିମା ଦୁଇଘଣ୍ଟା କାଳ ପଢ଼ାପଢ଼ି ସାରି ଉଆସ ପଟ ପଞ୍ଚବଟୀ ତୋଟାକୁ ବିଜେକରନ୍ତି । ଦିନ ଶେଷ ସମୟରେ ଉତ୍ତରରାୟ ଆଉ ମଣିମା ଚାନ୍ଦମଣି ଦେଈ ପ୍ରତିଦିନ ଘଣ୍ଟାଏ କାଳ ମାଢଣା ପକ୍‌କାଘାଟ ଉପରେ ବସି କଥାବାର୍ତ୍ତା କରନ୍ତି । ଦିନେ ବସି କଥାଭାଷା ହେଉଛନ୍ତି, ଉତ୍ତରରାୟ କହିଲେ, ''ହଇହେ, ଏହି ଯେ ଧାଈମା' ଯାହାକୁ ବୋଲୁଛ, ସେ କିଏ ?''

ଚାନ୍ଦମଣି କହିଲେ-'ଧାଈମା' ଜଣେ ପରିଜନ ନୁହନ୍ତି, ସେ ମୋ ମା'ଙ୍କ ଖୁଡ଼ୁତାଝିଅ ଭଉଣୀ—ମୋ ମାଉସୀ । ମୋତେ ପାଳିଥିବାରୁ 'ଧାଈମା' ବୋଲି ଡାକେ ।

ସେହିଦିନଠାରୁ ଉତ୍ତରରାୟ ସରସ୍ୱତୀ ଦେଈଙ୍କୁ ମା' ବୋଲି ମାନନ୍ତି, ସେହିପରି ମର୍ଯ୍ୟାଦା କରନ୍ତି । ଉଆସର ସବୁ ଭାର ତାଙ୍କ ହାତରେ । ବାହାର ମୁଲକର କାମରେ ମା'ଙ୍କୁ ନ ପଚାରି ଉତ୍ତରରାୟ କିଛି କରନ୍ତି ନାହିଁ । କେବଳ ଉଆସ ମଧ୍ୟରେ ନୁହେଁ, ବାହାରର କଚେରି ପାଞ୍ଜିଆ ପଟୁଆରିମାନଙ୍କ ହାତ ମଧ୍ୟ ଧାଈମା'ଙ୍କଠାରେ ବନ୍ଧା ।

## ନଟବରର ନାଜରାତି

ନାଜର ଦାଶରଥି ଦାସେ ଜଣେ ପୁରୁଣା ଅମଲା—ପେନ୍‌ସନ ନେବାର ସମୟ ଉପସ୍ଥିତ । ହେଲେ, ପୁତ୍ରକନ୍ୟାମାନଙ୍କ ବିଭାରେ କିଛି ଦେଣା ହୋଇଯାଇଛି, ସେପାଇଁ ଆଉ ବର୍ଷେଦୁଇବର୍ଷ ଚାକିରିରେ ରହିବାକୁ ଇଚ୍ଛା । କଟକରେ ନଟବରର ବିଭାଘର ଦୁଇମାସବାଦେ ଦାସଙ୍କୁ ଖୁଁ ଖୁଁ କାଶ ଧରିଲା ପରି ଲାଗୁଛି । ଡାକ୍ତର ଆଉ ବୈଦ୍ୟମାନେ କହିଲେ—ଆଉ ପରିଶ୍ରମ ଚଳିବ ନାହିଁ । ଜଳବାୟୁ ବଦଳାଇବାପାଇଁ ଅନ୍ୟ ଜାଗାକୁ ଯିବା ଦରକାର । ଦାସେ ଆପଣାର ପରିସ୍ଥିତି ସାହେବଙ୍କୁ ଜଣାଇଁ ନଟବରକୁ ନାଜରାତି କାମରେ ରଖାଇଦେଲେ । ନଟବରର ଏକାବେଳକେ ଏଡ଼େ ବଡ଼ ଚାକିରିଟା ପାଇବା ଆଶା ନ ଥିଲା । କେବଳ ଦାସଙ୍କର ଦେଣା କଥା ଶୁଣି ହାକିମ ଚାକିରିଟି ଦେଲେ । ଦାସେ ଚାକିରିରୁ ଖଲାସ ପାଇ ଗାଁକୁ ଚାଲିଗଲେ । କଟକ ବସାରେ ରହିଲେ ଏକା ନଟବର ଦାସେ ।

ନଟବର ମନେକଲେ, ସେ ଗୋଟିଏ ଛୋଟିଆ ଭଳିଆ ହାକିମ ହୋଇଗଲେଣି । ହୁକୁମାହାକିମ ଶୁଣିବାପାଇଁ କେତେଗୁଡ଼ିଏ ପିଆଦା ପଇଦଳ ପାଖରେ ହାଜର ।

ଦରମା ତ ଅଛି, ତାକୁ ଛାଡ଼ି ରୋଜ୍ କଞ୍ଚା ପଇସା କିଛି କିଛି ଘରେ ପଶେ । ସେ ଠିକ୍ କରିନେଲେ—ବୋହୂଟି ଘରକୁ ଆସିବାରୁ ଏମିତି ଲକ୍ଷ୍ମୀ ଆସିଲେ ।

ନଟବର ଦାସଙ୍କର ଧାରଣା, ଟଙ୍କା କମେଇବା ଓ ରଖିବା ଜୀବନର ସାର ଉଦ୍ଦେଶ୍ୟ ଅଟେ । ବୁଦ୍ଧିମାନ୍ ଲୋକକୁ ଅର୍ଥ ମିଳେ । କୌଶଳ କରି ଅନ୍ୟଠାରୁ ଆଣିବାକୁ ହେବ । ଧର୍ମ ବୋଲି ଯେ ଗୋଟାଏ ବାଛ ବିଚାର, ସେଇଟା କେବଳ ଅଳସୁଆ ଓ ନିର୍ବୁଦ୍ଧିଆଙ୍କ କଥା । ସଂସାରରେ ଦେଖାଯାଏ, ଯାହା ଯୋଗେ ଅର୍ଥ ଲାଭ ହୁଏ, ଅର୍ଥ ଲୋଭୀମାନଙ୍କର ତାହା ପ୍ରତି ଖୁବ୍ ପ୍ରୀତି । ନଟବର ଦାସେ ସ୍ଥିର କଲେଣି, ବୋହୂଟି ଆସିବାରୁ ଏତେ ଅର୍ଥଲାଭ—ବୋହୂଟି ବଡ଼ ସୁଲକ୍ଷଣୀ । ସୁତରାଂ ସ୍ତ୍ରୀ ପ୍ରତି ଭାରି ପ୍ରୀତି ।

X X X X

ଦାଶରଥି ଦାସେ ନିଜ ଗ୍ରାମରେ ଅଛନ୍ତି । ଦିନକୁ ଦିନ ବ୍ୟାଧିଟା ବଳିପଡୁଛି । ଦୁଇଜଣ ପୁରୁଣା ବୈଦ୍ୟ ଚିକିତ୍ସାରେ ଲାଗି ହଟିଗଲେଣି । ଜ୍ୱାଇଁ ଉତ୍ତରରାୟ ଓ ଚାନ୍ଦମଣି ସବୁବେଳେ ଖବର ନେଉଥା'ନ୍ତି । ତାଙ୍କ ଉଆସର ରାଜବୈଦ୍ୟ ଧନ୍ୱନ୍ତରୀଙ୍କୁ ରୁକୁଣାଦେଇପୁରରେ ବସାଇ ରଖିଛନ୍ତି । ସେ ଯାହା ବୋଇଲେ, କଲିକତା ଅବା ଯେଉଁଠାରେ ମିଳୁଛି, ଦାମିକା ଔଷଧମାନ ଆସି ପହଞ୍ଚୁଯାଉଛି । ଶେଷରେ ବୈଦ୍ୟ ଧନ୍ୱନ୍ତରୀ ସାଫ୍ କହିଦେଲେ—ଏ ରାଜଯକ୍ଷ୍ମା ରୋଗ । ଏ ବ୍ୟାଧି ଶିବ ମଧ ଭଲ କରିପାରନ୍ତି ନାହିଁ ।

ଦିନ କେତେଟା ପରେ ଦାସେ ସେଇ ରୋଗରେ ଆଖି ବୁଜିଲେ । ପିତାଙ୍କ ଶ୍ରାଦ୍ଧ ସକାଶେ ନଟବର ଦାସେ ଛୁଟି ଘେନି କଟକରୁ ଘରକୁ ଅଇଲେ । ବାନାମ୍ବର ସବୁ ସରଞ୍ଜାମ ଯୋଗାଡ଼ କରି ରଖିଥିଲେ । ମାନମହତକୁ ଜଗି ଶ୍ରାଦ୍ଧ କାମ ବଢ଼ିଲା । ନଟବର ଦାସେ ବୋଇଲେ—ବାପାଙ୍କ ଶ୍ରାଦ୍ଧରେ ତାକୁ ଋଣୀ ହେବାକୁ ପଡ଼ିଲା । ହେଲେ ଖଚୁଆ ଆଉ ଅସହଣି ଲୋକ ସବୁଆଡ଼େ—ଗ୍ରାମରେ ସେଭଳି ଲୋକଗୁଡ଼ାକ ଫୁସୁରୁଫାସର ହୁଅନ୍ତି—ବଡ଼ପୁଅ ତ ସବୁ ସରଞ୍ଜାମ ଯୋଗାଡ଼ କରି ରଖିଥିଲେ, ପୁଣି ଗଡ଼ ନରିପୁରରୁ ଯେତେ ପଦାର୍ଥ ଆଉ ବ୍ରାହ୍ମଣଙ୍କ ବିଦାକୀ ସକାଶେ ନଗଦ ଯାହା ଆସିଥିଲା, ସେଥିରୁ ବଳିପଡ଼ିଥିବ—ନଟବର ଦାସେ ଋଣୀ ହେଲେ କିଆଁ ? ଏଥିମଧ୍ୟରେ ବୋହୂର ଅଳଙ୍କାରଗୁଡ଼ାଏ ଗଢ଼ିପକାଇଲେ କି ?

# ନାଜର ଦମ୍ପତିଙ୍କ କଟକ ଯାତ୍ରା

ନାଜରଙ୍କ ଛୁଟି ମିଆଦ ଶେଷ ହେଲା ବୋଲି କଟକ ଯାତ୍ରାର ଯୋଗାଡ଼ କଲେ । ମେଲାଣି ଘେନିବାକୁ ଯିବାରୁ ବୋହୂ ପ୍ରଥମେ ରୁଷାରୁଷି, ତାହା ବାଦ୍ ଡକାପକାଇ ବାହୁନି କାନ୍ଦିବାକୁ ଲାଗିଲେ । ହଟ ଧରିବସିଲେ କଟକ ଯିବେ, ସାଙ୍ଗରେ ନନେଲେ ବେକରେ ଦଉଡ଼ି ଦେବେ । ଘରେ ତାଙ୍କର ଯେତେ ଦୁଃଖ ସ୍ୱାମୀଙ୍କୁ ବୁଝାଇ କହିଲେ— ଶାଶୁ ଭଲପା'ନ୍ତି ନାହିଁ—ଗାଳିଫଜିତ୍ ଗଞ୍ଜଣାମାନ ଲାଗିଛି—ନିଆଁ ପାଉଁଶ ଯା'ଟା ପାଖ ପଶିବ ନାହିଁ । ଏଓଳିକୁ ସେଓଳି ତୁଚ୍ଛା ବଗଡ଼ା ଭାତ—ତିଅଣ ବୋଲି ନାହିଁ । ମୋ କଥା ଚୁଲିକୁ ଯାଉ, ତୁମ ମୁହଁଟି ଶୁଖିଗଲାଣି । ମୁଁ ଗଲେ ପାଞ୍ଚ ତିଅଣ କରି ପରଶିବି ।

ନାଜର ବଡ଼ ବ୍ୟାକୁଳ ହେଲେ । ମନରେ ବିଚାର କଲେ—ସତ, ମୋର ଆଉ କିଏ ଅଛି ? ଯିଏ ଯେତେ ଥାଉ ଭାର୍ଯ୍ୟା ସାଙ୍ଗରେ କିଏ ହେବ ? ସ୍ଥିର କଲେ ଯେ, ସାଙ୍ଗରେ ନେବେ । ଘରେ ସମସ୍ତଙ୍କ ଆଗରେ ମନକଥା କହିଲେ । ଧାଈମା' କହିଲେ— ''ଏ କ'ଣରେ ନଟ ? ବୋହୂଟାକୁ କୁଆଡ଼େ ଘେନିଯିବୁ ? ପିଲାଟା କିଛି ଜାଣେନାହିଁ । ସେ କଟକ ପରି ସହରରେ ଚଳିବ କେମିତି ?''

ନାଜର କହିଲେ—''ହଁହଁ—ଥାଉଥାଉ—ବୋହୂ ଉପରେ ଯେ ମାୟାଟା ନା— ଖାଇଲା ନ ଖାଇଲା କେହି ଥରେ ପଚାରିବାକୁ ନାହିଁ, ଦିନରାତି କାମରେ ଲାଗିଥିବ— ବେରାମ ଆରାମ ହେଲେ କେହି ଥରେ ହାତ ବୁଲାଇଦେବାକୁ ନାହିଁ ।''

ଧାଈମା' କହିଲେ—''କ'ଣ କହୁଚୁରେ ନଟ ? ଘର କାମ ଗୁଡ଼ାକ ତ ଅପା ଆଉ ବଡବୋହୂ କରନ୍ତି—ସେ'ତ କୁଟା ଖଣ୍ଡକ ଦି'ଖଣ୍ଡ କରିବାକୁ ନାହିଁ । ମା' ଏମିତି ଢଙ୍ଗ ଶିଖାଇଛି ଯେ, ଖାଇବା କଂସାଖଣ୍ଡ ଉଠାଏ ନାହିଁ । ଆଉ କ'ଣ କହିଲୁରେ—ଶାଶୁ ବଡ଼ ଯା' ତା ଗୋଡ଼ରେ ହାତ ବୁଲାଇବେ ? ବଡ଼ ସୁଖୀ ସା'ନ୍ତାଣୀ ଝିଅ ନା ? ତା ମା ଦିନରାତି ସୁପାତି ଶେଯରେ ପଡ଼ିଥାଏ ନା ?''

ନାଜରାଣୀ ଖୁବ୍ ଡକାପାଡ଼ି ବାହୁନି ବାହୁନି କହିଲେ, ''ଶୁଣ, ଶୁଣ, ତୁମ ଆଗରେ ମୋ ମା'କୁ ଗାଳିଦେଉଛନ୍ତି । ମୁଁ କି ବୋଲଣା କଲି ? ଆଚ୍ଛା, ମତେ ଛାଞ୍ଚୁଣୀ ମାର— ମାରିପକାଅ-ଉଁ-ଉଁ-ଉଁ ମୁଁ ଏ ଜୀବନ ରଖିବି ନାହିଁ ।''

ନଟବର କହିଲେ, ''ମଲା ସତତ, ମୋ ଆଗରେ ବୋହୂଟାକୁ ଏତେ ଗାଳିଗୁଲଜ, ପଛନ୍ତେ କ'ଣ ନ କରୁଥିବେ ? ପରଘରେ ପଶିଛି, ତା'ର ଫେର୍ ଏତେ ବହପ ?''

ଧାଈମା'ଙ୍କ ମୁଣ୍ଡ ବୁଲାଇଲାଣି । ମେନକା ଦେଇ ଧାଇଁଆସି ହାତଧରି କହିଲେ—''ଆ ସରସ୍ୱତୀ ଆ—ତା'ର ଯା ଇଚ୍ଛା ତା କରୁ, ଆମର ସେଥିରେ କ'ଣ ଅଛି ?''

ତହିଁ ଆରଦିନ ସକାଳୁ ନାଜର ନାଜରାଣୀ କଟକ ଫେରିଗଲେ ।

## ପ୍ରତିଯୋଗିତା

ମନୁଷ୍ୟ ଜୀବନରେ ପୂର୍ଣ୍ଣ ସୁଖ ବିଧିର ନିୟମ ନୁହେଁ । ଯାହାକୁ ବାହାରୁ ସୁଖୀ ବୋଲି ଆମେ ମନେକରୁ, ଜାଣିବା ଯେ କୌଣସି ଗୋପନ କୋଣରେ କିଛି ନା କିଛି ଦୁଃଖ ରହିଛି । ଆମ୍ଭମାନଙ୍କର ନାଜର ଗୃହିଣୀ ପୂର୍ଣ୍ଣ ସୁଖିନୀ । ହଠାତ୍ ମନକଷ୍ଟର କାରଣ ଉପସ୍ଥିତ । ବସାରେ ଚିତ୍ରକଳାର ବାରମ୍ବାର ଉପସ୍ଥିତି ଦେଖି ତାଙ୍କ ମନରେ ଈର୍ଷା ଯୋଗୁଁ କଷ୍ଟର ଛାଇ ପଡ଼ିଲାଣି । ଚିତ୍ରକଳା ସୁନ୍ଦରୀ—ଭଲ ଧୋବଲୁଗା ପିନ୍ଧେ—ଗହଣାଗାଣ୍ଠିଗୁଡ଼ିକ ସୁନ୍ଦର—ସବୁବେଳେ ଘଷାମଜାରେ ଚକ୍‌ଚକ୍ କରୁଛି । ପ୍ରତ୍ୟେକ ସୁନ୍ଦରୀ ଅନ୍ୟର ସୌନ୍ଦର୍ଯ୍ୟ ଦେଖିଲେ ଅସହଣିକ ହୋଇଥା'ନ୍ତି । ଏପରି ସ୍ଥଳରେ ଚିତ୍ରକଳାର ରୂପ ନାଜରାଣୀଙ୍କ ପକ୍ଷରେ ଈର୍ଷାର କାରଣ ହେବା ଆଶ୍ଚର୍ଯ୍ୟର କଥା ନୁହେଁ । ସେ ବାହାରେ ପୁଣି ହସିହସି ତାଙ୍କ ସ୍ୱାମୀ ସହିତ କଥା ହେବ । ନିଶ୍ଚୟ ଏଇଟା ଦେହ ସହିବାର କଥା ନୁହେଁ । ନାଜରାଣୀଙ୍କ ମନରେ ସୁଖ ନାହିଁ, ସବୁବେଳେ ମୁହଁଟି ଶୁଖାଇ ବସିଛନ୍ତି ।

ଏଣେ ଚିତ୍ରକଳା ସା'ନ୍ତାଣୀଙ୍କ ମନୋଭାବ ଏକରକମ ସମଝିଗଲାଣି । କାମ ହାସଲ କରିବା ପାଇଁ ଚିତ୍ରା ତୁଚ୍ଛାଟାରେ ହେଲେ 'ଆଜ୍ଞା ସା'ନ୍ତାଣୀ—ଆଜ୍ଞା ମଣିମା' ବୋଲି ଦଶଥର ଡାକେ । ସଞ୍ଜବେଳେ ବସିଥିଲେ, ''ଆଜ୍ଞା ମଣିମା ! ଶ୍ରୀଅଙ୍ଗକୁ ପୀଡ଼ା ହେଉଥିବ ପରା'' କହି ସା'ନ୍ତାଣୀଙ୍କ ପାଦଦୁଇଟିକୁ ତା'ର ସୁକୋମଳ ସୁନ୍ଦର ଜଙ୍ଘ ଉପରେ ପକାଇ ଘଷିବସେ । ସା'ନ୍ତାଣୀ ଖୁବ୍ ଖୁସି ହୋଇଗଲେଣି—ହେଲେ ମନ ଭିତରେ କିମିତିକା ବିଚିକିଚିଆ କଥାଟାଏ ପଶିଛି, ସହଜରେ ଛାଡୁନାହିଁ ।

ଦିନେ ସକାଳଓଳି ପିଆଦା ଚାରିଅଣାର ପନିପରିବା କିଣିଆଣିଲା । ଚିତ୍ରକଳା କହିଲା, ''ଆଜ୍ଞା ସା'ନ୍ତାଣୀ, ଏ କ'ଣ ଚାରିଅଣାର ପରିବା ? ମୋତେ ଚାରିଅଣା ପଇସା ଦେଉନ୍ତୁ ତ—ମୁଁ ସଉଦା କିଣଆଣେ ।'' ଚିତ୍ରା ଯେଉଁ ସଉଦା ଆଣିଲା, ପିଆଦାକିଣା ସଉଦାଠାରୁ ଢେର୍ ବେଶି ଓ ଭଲ । ସା'ନ୍ତାଣୀ ବୁଝିଗଲେ, ଚିତ୍ରା ବିଶ୍ୱାସୀ—ଆଉ ପିଆଦାଟା ଚୋର । ସେହି ଦିନରୁ ଘରର ସମସ୍ତ କିଣାକିଣି ଚିତ୍ରା ଜିମା । ଯାହାହେଉ ସା'ନ୍ତାଣୀ ଖୁବ୍ ଘରଣୀ । ଗୋଟିଏ ପଇସା ଦେହର ରକ୍ତ ।

ମାମଲାକାରୀମାନେ ପନିପରିବା, ମାଛ, ଦହି, ଦୁଧ ଢେର୍ ଢେର୍ ଦେଇଥା'ନ୍ତି । ବଳିପଡ଼ି ଆପେ ଖରାପ ହୋଇଗଲେ ବାଡ଼ିଆଡ଼େ ଖତଗଦାରେ ଢାଳିଦେବେ ପଛକେ, ପୋକରା ବାଇଗଣ କଷିଟାଏ ହାତଟେକି କାହାରିକୁ ଦେବେ ନାହିଁ । ନାଜରଙ୍କ ଇଚ୍ଛା ତା'ହିଁ ।

ସବୁ ତ ହେଲା—ହଁ, ଅସଲ କଥାଟା ରହିଗଲା—ଚିତ୍ରା ଯେତେବେଳେ ହସିହସି ବାବୁଙ୍କ ସାଙ୍ଗରେ କଥା କହେ, ମନରେ କିମିତିକା ଚେଁ କରି ଲାଗିଯାଏ । ବିଶ୍ୱାସରେ ଅବିଶ୍ୱାସ—ଆନନ୍ଦରେ ଦୁଃଖ । କେତେଦିନ କଟିଗଲା । ଦିନେ କ'ଣ ହେଲାନା—ସଞ୍ଜବେଳିଆ ସା'ନ୍ତ କଚେରି ବାହୁଡ଼ା ଶୀତଳ ଠା' ବଢ଼େଇଲେଣି, ଚିତ୍ରା ଚଞ୍ଚଳ ଯାଇ କୋଠା ଉପରେ ସଉପଟାଏ ମେଲିଦେଲା । ସା'ନ୍ତ ବିଜେହୋଇ ଭଡ଼ର ଭଡ଼ର କରି ହୁକାଟା ଟାଣୁଛନ୍ତି । ସା'ନ୍ତାଣୀଙ୍କ ମୁଖରୁ ପଚର ପଚର କରି ପାନପିକଗୁଡ଼ାକ ସଉପ ପାଖରେ ଢାଳି ପଡୁଛି । ଚିତ୍ରକଳା ପାନ, ଗୁଡ଼ାଖୁ ଭଲକରି ସଜିଲକରିଦେଇ ଆପଣା ଘରକୁ ଚାଲିଗଲା ।

ସା'ନ୍ତେ ଗଳା ଖଙ୍କାରିଦେଇ କହିଲେ, ''ଏ ଚିତ୍ରକଳା କିଏ ଜାଣ ? ଏ ଗୋଟାଏ ବଡ଼ଲୋକ ଘରର ବୋହୂ । ଘରେ ସମସ୍ତେ ମରିଗଲେଣି, ତେଣୁ ଆମ ଆଶ୍ରା ଧରିଛି । ତା ହାତରେ ଟଙ୍କା ସୁନା ଢେର୍ । ଭାରି ଗୋଟାଏ କୋଠାଘର, ସେସବୁ ଆମକୁ ଲେଖିଦେବ । ତୁମକୁ ବଗିରେ ବସାଇ ଦିନେ ନେଇଯିବି, ସବୁ ଦେଖାଇ ଆଣିବି । ସେ ସବୁ ତ ତୁମର ହେବ ।''

ଧନଦଉଲତ, କୋଠାଘର କଥା ଶୁଣି ସା'ନ୍ତାଣୀଙ୍କ ମନ କ'ଣ ହୋଇଗଲାଣି । ମନଭିତରେ ଯେ ଟିକିଏ ଗୋଳମାଳ ଥିଲା ଏକାବେଳକେ ସାଫ୍ । ଆଉ ଭିନ୍ନଭାବ ନାହିଁ, ଦୁହେଁ ଏକ ଆତ୍ମା ।

## ନାକଫୋଡ଼ିଆ ମା' ଓ ଚିତ୍ରକଳା

କୋଡ଼ିଏ ବର୍ଷର ଭେଣ୍ଡିଆ ପୁଅ ନାକଫୋଡ଼ିଆଟା ବାଡ଼ି ବେମାରିରେ ଚାଲିଗଲାଦିନୁ ତା ମା' ବୁଢ଼ୀଟା ଢେର୍ ଦିନଯାଏ ଏକୁଟିଆ ଘରେ ପଡ଼ିରହିଥିଲା । ଯେତେ ଦୁଃଖ ହେଉ ପଛକେ ପେଟଟି ସେ କଥା ନଶୁଣେ । ଶେଷରେ ଘରଡ଼ିହଖଣ୍ଡ ବିକିଦେଇ ସାବଜାଦା ବଜାର ନନ୍ଦକିଶୋରବାବୁଙ୍କ ବଗିଚା ଗୁହାଳ କଣରୁ ପାଞ୍ଚହାତ ମାଗିନେଇ ଟୁଙ୍ଗୀଟାଏ କଲା । ବୁଢ଼ୀର ଗୋଟିଏ ଆଚ୍ଛା ଗୁଣ ଥିଲା—ସେ ଭଲକରି ଝୁଡ଼ା ବାନ୍ଧି

ଢାଣେ । ହାତରେ ବାଡ଼ିଖଣ୍ଡେ ଧରି ନଇଁ ନଇଁ ଯାଇ ବାବୁମାନଙ୍କ ଘର ବୋହୂ-ଝିଅମାନଙ୍କ ଜୁଡ଼ା ବାନ୍ଧିଦେଇ ଆସେ । ଦିନେ ଶୁଣିଲା ନାଜରବାବୁଙ୍କ ବୋହୂ ଦେଶରୁ ଆସିଛନ୍ତି । ବାଡ଼ିଖଣ୍ଡ ଠୁକୁରୁ ଠୁକୁରୁ କରି ଦାଣ୍ଡ ଦୁଆର ପାଖରୁ ''ସାଆନ୍ତାଣୀ—ସାଆନ୍ତାଣୀ— ଏ ସା'ନ୍ତାଣୀ ମଣିମା'' ଡାକି ଡାକି ଉଆସରେ ହାଜର । ସାଆନ୍ତାଣୀଙ୍କ ପାଖରେ ବସିପଡ଼ି ଆପଣା ଗୁଣଟା ବନେଇ ଜାହିରକଲା । ତା କଥା ଶୁଣି ସା'ନ୍ତାଣୀ ମୁଣ୍ଡ ମୁକୁଳା କରି ବସିଗଲେ । ନାକଫୋଡ଼ିଆ ମା' ଗୋଟିଏ କଟକୀ ଜୁଡ଼ା ବାନ୍ଧିଦେଲା । ମୁଖଭଙ୍ଗୀରୁ ବୁଝାଗଲା—ସା'ନ୍ତାଣୀ ବଡ଼ ଖୁସିହୋଇଗଲେଣି । ସବୁଦିନେ ଆସି ଜୁଡ଼ା ପାରିଦେଇ ଯିବାକୁ ଫରମାସ କଲେ ।

ନାକଫୋଡ଼ିଆ ମା' ଦୁଇ ତିନିଥର ଆସି ମୁଣ୍ଡ କୁଣ୍ଡେଇ ଗଲାଣି । ଟାଉକରି ଗୋଟାଏ ମାଗିବସିବ, ସା'ନ୍ତାଣୀ କ'ଣ ମନରେ ବିଚାରିବେ ? ହେଲେ ସେ ବୁଝିଗଲାଣି, ଢାଗାଟା ପଥୁରିଆ—ମୁହଁ ନ ଫିଟାଇଲେ ଚଳିବ ନାହିଁ । ଦିନେ କଥା ପକେଇଲା—''ମା ସା'ନ୍ତାଣୀଏ, ଆଜି ଘରେ କିଛି ଖାଇବାକୁ ନାହିଁ, ସେରେଖଣ୍ଡେ ଚାଉଳ ଦେଲେ ଭଲହୁଅନ୍ତା ।''

ଏଇଟା କ'ଣରେ ? ଆମର ହେଲା ହାକିମଘର—ପାଞ୍ଚ ଜଣ ପାଞ୍ଚ ପଦାର୍ଥ ଦେବେ, ଏଇଟା କ'ଣ କହୁଛି ମା' ଚାଉଳ ଦିଅ ? ଚାଉଳ କ'ଣଲୋ ? ସା'ନ୍ତାଣୀ ମୁହଁ ମୋଡ଼ିଦେଇ ଚାଲିଗଲେ ।

ତହିଁ ଆରଦିନ ସେ କ'ଣ କଲା ନା, ଟିକିଏ ଆଗରୁ ଆସି ମୁଣ୍ଡ କୁଣ୍ଡେଇବାକୁ ବସିଲା । ଆଜି ମୁଣ୍ଡକୁଣ୍ଡାରେ ଭାରି ଯତ୍ନ—ମୁଣ୍ଡକୁଣ୍ଡା ସଙ୍ଗେସଙ୍ଗେ ପ୍ରଶଂସାଗୁଡ଼ିଏ ଢାଳିପକାଉଥାଏ । ସାନ୍ତାଣୀ ଏଣିକି କେଜାଣି ଆନନ୍ଦରେ ଢଳିପଡ଼ିବେ । ପାଟିଟା ଆଁ କରିଦେଇ 'ଆଚ୍ଛା' 'ଆଚ୍ଛା' କହି ଦର୍ପଣରେ ମୁହଁ ଦେଖିଲେ । ବୁଢ଼ୀ ଜାଣିଲା ମନ୍ତ୍ରଟି କାଟୁ କରିଛି । କହିଲା, ''କଟକଯାକ ହାଟ ବସିଛି ଆପଣଙ୍କ ପରି ହାକିମ, ଆପଣଙ୍କପରି ସୁନ୍ଦରୀ ଆଉ କେହି ନାହିଁ । ଦେବାନେବା ପଦରେ ଆପଣ ହାତ ଝାଡ଼ିଦେଲେ ଲକ୍ଷେ ଲୋକର ପେଟ ପୂରିଯାଏ ପରା ।''

ଆମ୍ଭେମାନେ ପରେ ସମ୍ବାଦ ପାଇଲୁ ନାକଫୋଡ଼ିଆ ମା'କୁ ଆଉ ଚାଉଳ ସକାଶେ ଦୁଇ ଓଳି ହରକତ ହେବାକୁ ପଡ଼ିନାହିଁ । ଆଉ ସେ ଯେଉଁ ପଚା ପୋକରା ପରିବା ଗୁଡ଼ାଏ ପାଇଥିଲା, ସେଥିରେ ତିନି ଓଳି ତାହାର ତିଅଣ କାମ ଚଳିଯାଇଥିଲା ।

ନାଜରବାବୁଙ୍କ ବସାକୁ ନାକଫୋଡ଼ିଆ ମା'ଟାର ବାରମ୍ବାର ଯିବା ଆସିବା ଆଶଙ୍କାର କାରଣ ବୋଲି ଚିତ୍ରକଳା ମନେକଲାଣି । ତା'ଭଳି ବୁଢ଼ୀକୁ ହେଲା କରିବା

ଠିକ୍ ନୁହେଁ ବୋଲି ସେ ସ୍ଥିରକରିସାରିଲାଣି । ଆପେ ଚିହ୍ନା ନପଡ଼ି କେଉଁ କୌଶଳରେ ବୁଢ଼ୀଟାକୁ ଦୂର କରାଯିବ, ସେଥିର ଉପାୟ ଖୋଜିବାରେ ଥାଏ ।

ସନ୍ଧ୍ୟା ସମୟ । ମାଛିଅନ୍ଧାରିଆ ହୋଇଗଲାଣି । ଚିତ୍ରକଳା ସଉଦା ଘେନି ହାଜର । ସା'ନ୍ତାଣୀ ବାରନ୍ଦାରେ ବସି ସଉଦାପତ୍ର ବୁଝିନେଉଛନ୍ତି—ଚିତ୍ରକଳା ହିସାବ ବୁଝାଇଦେଉଛି । ନାକଫୋଡ଼ିଆ ମା' ଧୀରେ ଧୀରେ ଆସି ପଛପଟରେ ଠିଆହୋଇଗଲାଣି । ତା ଉପରେ କାହାରି ନଜର ନାହିଁ । ବୁଢ଼ୀ ପଛଘୁଞ୍ଚା ଦେଇ ଉହାଡ଼ରେ ଠିଆହୋଇଛି । ଚିତ୍ରକଳା କହିଲା—''ଏଇ ଗୁଜୁରାତି ଦେଢ଼ପଣିକୁ ପଇସାଏ—ପାନ ଦେଢ଼ ପଇସାରେ ଶହେ ।''

ସା'ନ୍ତାଣୀ କହିଲେ—''କାଲି ଉପରଓଳି ନାକଫୋଡ଼ିଆ ମା'କୁ ଯୋଡାଏ ପଇସା ଦେଇଥିଲି—ସେ ଢେର୍ କମ୍ ଆଣିଥିଲା—କହୁଥିଲା ପଇସାକୁ ପାଞ୍ଚଟା ନା ଛ'ଟା ପରା ।''

ଚିତ୍ରକଳା କହିଲା—''ଏ ମଣିମା ! ସେ ବୁଢ଼ୀଟା ଅସଲ ଚୋରଣୀ, ଅଧଲାକର ପାନ ଆଣି ଦେଢ଼ପଇସା ରେସା କାଟିଲାଣି । ସେଇଟା ମଧ୍ୟ ଟୁଣିଆଣୀ । ଟୁଣା କରି ଟଙ୍କା ପଇସା ଉଡ଼ାଇ ଆଣେ । ସେଟା ଗୋଟେ ଡାଆଣୀ ।''

ଏଣେ ନାକଫୋଡ଼ିଆ ମା' ତ ସବୁ ଶୁଣୁଥିଲା, ଆଉ ସହିପାରିଲା ନାହିଁ । ''ହଁଲୋ ଅଇଁଠାଖାଇ—ବାରବୁଲୀ—ପୋଇଲୀ ! ମୁଁ ଟୁଣିଆଣୀ—ମୁଁ ଚୋରଣୀ —ମୁଁ ଡାଆଣୀ !'' ଏହିପରି ଗର୍ଜନ କରୁକରୁ ବାହାରକୁ ଡେଇଁପଡ଼ିଲା । ଚିତ୍ରକଳା ମଧ୍ୟ ଗର୍ଜନ କରି ବୁଢ଼ୀକୁ ଆକ୍ରମଣ କଲା । ଦୁଇଜଣଙ୍କ ପାଟିରେ ଘର କମ୍ପିଲା । ଦୁହିଙ୍କ ମଧ୍ୟରେ ଗାଳି ଦିଆନିଆ ହେଉଥାଏ । ସେମାନଙ୍କ ଚଉଦପୁରୁଷ ପ୍ରତି ଅତି ମନ୍ଦ ଖାଦ୍ୟ ଏବଂ ଅତି କଦର୍ଯ୍ୟ ସ୍ଥାନକୁ ଯିବାର ବ୍ୟବସ୍ଥା ହେଉଥାଏ ।

ଏତେବେଳ ଯାଏଁ ତୁଚ୍ଛା ମୁହଁକଥାରେ ଯୁଦ୍ଧ ଚଳୁଥିଲା । ଦୁଇଜଣ ଟିକିଏ ଲଗାଲଗି ଭିଡ଼ାଭିଡ଼ି ହୋଇଗଲେ । ତାହାବାଦେ ପେଲାପେଲି—ଏବେ ଚଳିଲା ହାତ । କେବଳ ହାଉହାଉ ଶବ୍ଦ—ଚଟ୍‌ଚଟ୍ ଚାପୁଡା—ଗୁମ୍‌ଗୁମ୍ ବିଧା । ଦୁଇଟାଯାକ ଲହୁଲୁହାଣ ହୋଇଗଲେଣି । ବୁଢ଼ୀଟା ଆଉ ସମ୍ଭାଳି ପାରିଲାନାହିଁ, କଥାଟା ଫିଟାଇ ହାଙ୍କିଦେଲା— ''ହଁ ଲୋ ଅଇଁଠାଖାଇ ପୋଇଲୀ—ରାଣ୍ଡୀ—ଏତେ ଯେ ଗହଣା ପିନ୍ଧିଚୁ ତତେ କିଏ ଦେଇଚି ? ନାଜରବାବୁ ଦେଇଚନ୍ତି । ସା'ନ୍ତଙ୍କ ସାଙ୍ଗରେ ପୀରତି । ସା'ନ୍ତ ତୁନିତୁନି ତତେ ପଇସାଦିଅନ୍ତି, ସେଇ ପଇସାରେ ସଉଦା କିଣୁ—ଶସ୍ତାରେ ଆଣିଚୁ ବୋଲି ଭଲେଇ ହେଉ ପରା ।''

ସା'ନ୍ତାଣୀ ସେଇ ମାଡ଼ଗୋଳଦେଖି ଖୁସିଟାଏ ହେଉଥିଲେ । ନାକଫୋଡ଼ିଆ ମା'ର ଏ କଥାଗୁଡ଼ାକ ଯେମନ୍ତ କିଏ ତାଙ୍କ ଦେହରେ ଜଳନ୍ତା ନିଆଁଗୁଡ଼ାଏ ଢାଳିଦେଲା । ''ହଇଲୋ ପୋଇଲୀ ଅଇଁଠାଖାଇ'' କହି ସା'ନ୍ତାଣୀ ବାରନ୍ଦା ଉପରୁ ତଳକୁ ଖପ୍‌କରି ଡେଇଁପଡ଼ିଲେ । ମାଇକିନିଆ ଯୋଡ଼ାକ ତ ମାଡ଼ଗୋଳରେ ଲାଗିଛନ୍ତି—ସା'ନ୍ତାଣୀ ବିଜେହୋଇଗଲେଣି—ଦେଖୁଛି କିଏ ? ଦୁଇଆଡ଼ର ମାଡ଼ ତାଙ୍କ ଉପରେ ବସିବାକୁ ଲାଗିଲା । ସା'ନ୍ତାଣୀ ଆଉ ଖପା ହେବେ କ'ଣ—ଗଧ ରଡ଼ି ଛାଡ଼ିଲା ପରି, ''ବାପାଲୋ—ମା'ଲୋ—ପୋଇଲୀ ଯୋଡାକ ମାରିପକାଇଲେ ଲୋ—ଧାଇଁପଡ଼ ଲୋ'' କହି ଘୋର ରଡ଼ିଟାଏ ଛାଡ଼ିଲେ । ତାଙ୍କ ରଡ଼ି ଶୁଣି ମାଇକିନିଆ ଯୋଡ଼ାକ ଥକାହୋଇ ଛିଡ଼ାହୋଇଗଲେ । ''ମଲା, ମଲା, ସା'ନ୍ତାଣୀଟାକୁ ବାଡ଼େଇପକାଇଲୁ !'' କହି ଦୁଇଜଣ ଦୁଇଆଡ଼କୁ ପଳାଇଗଲେ । ସାନ୍ତାଣୀଙ୍କୁ ଟିକିଏ ବାଟ ମିଳିଗଲା, ଶୋଇଲାଘରେ ପଶିଯାଇ ଧଡ଼୍‌କରି କବାଟ କିଳି ଦୁଲ୍‌କରି ପଲଙ୍କରେ ପଡ଼ିଗଲେ ।

ନାଜରବାବୁଙ୍କର ବସାରେ ପହଞ୍ଚିବାକୁ ରାତି ଅନ୍ଦାଜ ଦଶ ଘଣ୍ଟା । ବସାରେ ପହଞ୍ଚି ଦେଖିଲେ କେହି କୁଆଡ଼େ ନାହିଁ । ପହଡ଼ଘର କବାଟରେ ହାତ ଠୁକିଲେ, ଭିତରୁ ବନ୍ଦ । ଏତିକିବେଳେ ବାଡ଼ିଦୁଆରୁ ଚୁଁ ଚୁଁ କରି କିଏ ଡାକିବାର ଇସାରା ଶୁଭିଲା । ନାଜରବାବୁ ବାଡ଼ିଦୁଆର ପାଖକୁ ଚାଲିଯିବାରୁ କିଏ ଗୋଟାଏ ତାଙ୍କ ହାତଧରି ଭିଡ଼ି ଘେନିଗଲା । ଅନ୍ଧକାରରେ ଦୁଇଟା ଲୋକ ବସି ତୁନିତୁନି କଥାଭାଷା ହେଲେ । ତାହାବାଦ୍ ବାବୁ ପହଡ଼ଘର ଦୁଆରକୁ ଆସି ହାତରେ ଥିବା ଟଙ୍କାଥଳିଟା ଝମ୍‌ଝମ୍ କରି କହିଲେ—''ଆଜି କଚେରିରୁ ଏତେ ଟଙ୍କା ମିଳିଲା—ଏହି ଟଙ୍କାରେ ଗୋଟାଏ ସୁନା ଚମ୍ପାକଲି ବନାଇଦେବାକୁ ମନରେ ଭାବିଥିଲି । ବଣିଆ ଆସି ବସିଛି—ବେକର ମାପ ନିଅନ୍ତା—ଦୁଆର ତ ବନ୍ଦ—ବଣିଆଟା ଏବେ ଚାଲିଯାଉ ।''

ସା'ନ୍ତାଣୀ ଧଡ଼୍‌କରି କବାଟଟା ଖୋଲି ବାହାରିପଡ଼ିଲେ । ବସିପଡ଼ି ଆଗକରି ଭୋ ଭୋ ରଡ଼ି । ଧକେଇ ଧକେଇ ଘଡ଼ିଏ ଖଣ୍ଡେ ବିତିଗଲା । ତହିଁଉତ୍ତାରେ ଗୁହାରି କଲେ— ''ଦେଖ ତ, ପୋଇଲୀ ଯୋଡ଼ାକ ମତେ କେତେ ବାଡ଼େଇପକାଇଛନ୍ତି ।'' ନାଜରବାବୁଙ୍କ ହାତଟା ଭିଡ଼ିନେଇ ଆପଣା ପିଠି, ବାହୁ—ଆଉ ଜାଗାସବୁ ଦେଖାଇଲେ । ନାଜରବାବୁ ଅଣ୍ଡାଳି ଅଣ୍ଡାଳି ଦେଖିଲେ । ଭାରି ରାଗିମାଗି ଗର୍ଜନ କରି ଡାକିଲେ— 'ଚିତ୍ରା !' ଚିତ୍ରା ଆସି ପାଖରେ ଛିଡ଼ାହୋଇଥିଲା—ଭୋ' କରି ତକାଟାଏ ପାଡ଼ିଲା । ଚିତ୍ରା କାନ୍ଦିକାନ୍ଦି ବୋଲୁଥାଏ—''ଆଜ୍ଞା, ଆପଣ ତୁମେ ମୋ

ସା'ନ୍ତାଣୀ—ମୋ ଠାକୁରାଣୀ—ମୋ ଦେବତାଣୀ । ତୁମ ଆପଣଙ୍କ ଶ୍ରୀଅଙ୍ଗକୁ ହାତ ଉଞ୍ଚାଇବି ? ମୋ ହାତ ଛିଡ଼ିପଡ଼ିବ—କୁଡ଼ୀ କୁଷ୍ଠୀ ବାହାରିବ—ପୋକ ପଡ଼ିଯିବ । ମୁଁ ମାରିନାହିଁ—ସେହି ଟୁଣିଆଣୀ ଚୋରଣୀ ବୁଢ଼ୀଟା ମାରିଛି ।''

ନାଜରବାବୁ ପଚାରିଲେ—''ହଇ ହେ, ଚିତ୍ରା ଯେ କହୁଛି ମାରିନାହିଁ ?'' ନାଜରାଣୀ କହିଲେ—''ଦୁଇଜଣଯାକ ମୋ ପାଖରେ ଛିଡ଼ା ହୋଇ ମାରିଲାପରି ଜଣାଯାଉଥାଏ ।'' ଚିତ୍ରା କହିଲା—''ମୁଁ ଦେଖିଲି—ଅଇଁଠାଖାଇଟା ସା'ନ୍ତାଣୀଙ୍କୁ ବାଡ଼େଇପକାଇଲା । ସେଟା ବାଡ଼େଇବା ବେଳେ ମୁଁ ମୁଣ୍ଡ ପିଠି ଦେଖାଇ ଦେଉଥାଏ । ଦେଖନ୍ତୁ, ସା'ନ୍ତାଣୀଙ୍କ ଲାଗି ମୋର କି ହାଲ୍ !'' ଏହା କହି ନାଜରବାବୁଙ୍କ ହାତଟା ଟାଣିନେଇ ତାହା ଦେହର ସବୁ ଜାଗାରେ ବୁଲେଇଲା ।

ନାଜରବାବୁ ତ ପାଣିହୋଇଗଲେଣି—ସମସ୍ତ ରାଗ ନାକଫୋଡ଼ିଆ ମା' ଉପରେ ପଡ଼ିଲା । ନାଜରବାବୁ କଚେରି ପୋଷାକ ପାଲଟିଲେ । ଜଳଖିଆ କରି ସ୍ଥିରହୋଇ ବସିଲେ । ଚିତ୍ରା ଗୁଡ଼ାଖୁ ସାଜି ଆଣିଦେଲା । ନାଜର ଉଭର ଭଡ଼ର କରି ହୁକା ଟାଣୁଥାନ୍ତି । ଚିତ୍ରା ଧାଇଁ ଯାଇ ଗୁଡ଼ାଏ ମିଠେଇଖଜା ଘେନିଆସିଲା । ଗୋଡ଼ ହାତ ଧରି ସା'ନ୍ତାଣୀଙ୍କୁ ଠା'ରେ ବସାଇଲା । ଚିତ୍ରା ଉପରେ ସା'ନ୍ତାଣୀ ଖୁସିହୋଇଗଲେଣି ।

ନାଜରବାବୁ କହିଲେ—''ହୋଇ ହେ, ସେ ବୁଢ଼ୀଟା ତୁମକୁ କିଁଆ ବାଡ଼େଇଲା ?'' ଚିତ୍ରା ଚଞ୍ଚଳ କହିପକାଇଲା—''ତାହାର ମତଲବ ଏ ଘରେ ସେ ବଜାର ସଉଦା କରିବ । ସାନ୍ତାଣୀ ତାକୁ ପଇସା ନଦେଇ ମୋ ହାତରେ ସଉଦା କିଣିଲେ । ତା'ର ତ ରାଗ ଥିଲା—ଆଜି ମୁଁ ସଉଦା ଆଣି ବୁଝେଇଦେଉଛି, ପହଞ୍ଚିଗଲା । ଆଉ କି ସେ ରାଗ ସମ୍ଭାଳିପାରେ ? ଚଳେଇଛି ତ ବାଡି, ଆଉ କ'ଣ !''

ସା'ନ୍ତାଣୀ କହିଲେ, ''ହଁ-ହଁ, ସେଦିନ ଯୋଡ଼ାଏ ପଇସାର ପାନ କିଣିବାକୁ ଦେଇଥିଲି, ଅଧଲାକର ଆଣି ଦେଢ଼ ପଇସା ଚୋରି କଲା ।''

ଚିତ୍ରା—''ଆଜ୍ଞା ସା'ନ୍ତ ! ଶୁଣି ଆଜ୍ଞା ହେଉ । ମୁଁ ଜାଣି ମିଛେଇ—ମୋ କଥା ସବୁ ପୋଡ଼ିଯାଉ, ସା'ନ୍ତାଣୀଙ୍କ ପଦକରୁ ବୁଝନ୍ତୁ, ଭାତ ହାଣ୍ଡିରୁ ସିନା ଗୋଟାଏ ଚିପିବେ ।''

ଏହା ଭିତରେ ଚିତ୍ରା ତିନି ଗିନା ମାଲପା ସା'ନ୍ତାଣୀଙ୍କ ଶ୍ରୀଅଙ୍ଗରେ ମଖେଇଦେଇ ସାରିଲାଣି । ଚିତ୍ରା କହିଲା —''ଚୋରଣୀଟା ସା'ନ୍ତାଣୀଙ୍କ ଆଗରେ କହୁଥିଲା, ଆପଣ କେମିତି ହାତରୁ ଟଙ୍କାଦେଇ ମତେ ଗହଣା ଗଢ଼େଇ ଦେଇଛନ୍ତି । ଗହଣା ଟଙ୍କା ଯେ ମୁଁ ଦେଇଥିଲି, କିଏ ନଜାଣେ ?'' କଥାଟା ଶୁଣି ତିନିଜଣଯାକ ଖୁସି । ନାଜରାଣୀ

ଖୁସି—ତାଙ୍କ ଅନୁମାନ ଠିକ୍—ତାଙ୍କର ଖୁବ୍ ବୁଦ୍ଧି । ଚିତ୍ରା ଖୁସି—ତା କଥାଟା ଭଲଲାଗିଲା । ନାଜର ଖୁସି—ସହଜରେ ଖଲାସ ପାଇଗଲେ ।

## ଉତ୍ତରରାୟଙ୍କ ବିୟୋଗ

ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି । ଶ୍ରୀ ଶ୍ରୀ ଶ୍ରୀ ଉତ୍ତରରାୟଙ୍କ ପୀଡ଼ା ଆରମ୍ଭଠାରୁ ପ୍ରଜାପାଟକ ଉଆସକୁ ଧାଡ଼ି ଛୁଟିଛନ୍ତି । ଜ୍ୱରଟା ଦିନକୁଦିନ ବଳିପଡୁଛି । ପୁରୁଣା ଟାଣୁଆ ଚାରିଜଣ କବିରାଜ ଥକିଗଲେଣି । କଟକରୁ ଯେଉଁ ଡାକ୍ତରଟା ଆସିଥିଲା, ନଗଦ ଦେଢ଼ଶ ଟଙ୍କା ବାନ୍ଧି ଜବାବ ଦେଇ ଚାଲିଗଲା । ଜ୍ୱରର ଆଜି ତେରଦିନ । ଉତ୍ତରରାୟଙ୍କୁ ଯୁଗଳକିଶୋରଙ୍କ ନାଟମନ୍ଦିର ଆଗ ମେଲାରେ ତୁଳସୀ ଚଉରା ମୂଳରେ ଶୁଆଇଦେଇଛନ୍ତି । ଚନ୍ଦ୍ରମଣି ମଣିମା ଉତ୍ତରରାୟଙ୍କ ପାଦଦିଓଟି ଧରି ମୁହଁକୁ ବଲବଲ କରି ଚାହିଁଛନ୍ତି । ଧାଈମା ତଙ୍କିଟିଏ ଧରି ଟିକିଏ ଟିକିଏ କରି ପାଦୁକ ରୋଗୀଙ୍କ ମୁହଁରେ ଦେଉଛନ୍ତି । ବଡ଼ପୁଅ ଟିକାଏତ ନରହରିଟି ସବୁ କଥା ବୁଝିଲାଣି—ବାପା ମା'ଙ୍କ ମୁହଁକୁ, ଜେଜୀମାଙ୍କ ମୁହଁକୁ ଆକୁଳ ହୋଇ ବାରମ୍ବାର ଚାହୁଁଛି । ଆଖିଦି'ଟା ଲୁହରେ ଛଳଛଳ । ସାନପୁଅ ଶ୍ରୀହରି—ବୟସ ଅଢ଼େଇବର୍ଷ—କିଛି ବୁଝୁନାହିଁ । 'ମା, ବାପ କନ ହେଲେ—ବାପ କନ ହେଲେ' କହି ମା' ବେକଧରି ଝୁଲିପଡୁଛି । ସରସ୍ୱତୀ ଦେଈ ଠାରିଦେବାରୁ ଯୋଡ଼ାଏ ପୋଇଲୀ ଧାଇଁଆସି ଶ୍ରୀହରିକୁ ମନ୍ଦିର ପଛକୁ କାଖେଇ ଘେନିଗଲେ ।

ବାହାରେ ଲୋକଗହଳି । ସିଂହଦ୍ୱାରରେ କିଳିଣି । କବିରାଜଙ୍କର ମନା, ରୋଗୀଙ୍କ ପାଖକୁ କେହି ଯିବେ ନାହିଁ । ଏଣେ ଉଆସ ବିଜେ ହୋଇଥିବାରୁ କାହାରି ଯିବାର ବାଟ ନାହିଁ । ଠିକ୍ ସନ୍ଧ୍ୟା, ଠାକୁରଙ୍କ ଆଳତି ଘଣ୍ଟା ଢଂ ଢଂ କରି ଯିମିତି ବାଜିଉଠିଛି, ମନ୍ଦିର ଭିତରୁ ଭାରି ଗୋଟାଏ ଆକୁଳ କାନ୍ଦଣା ଉଠିଲା । ସେହି ରଡ଼ି ସାଙ୍ଗେସାଙ୍ଗେ ଗାଁ ଗୋଟାକଯାକ ବୁଲିଗଲା । ସ୍ତ୍ରୀ, ପୁରୁଷ, ବୁଢ଼ା, ଭେଣ୍ଡିଆ, ପିଲା—ଠା ଜାଗାରେ ରଡ଼ି ଛାଡୁଛନ୍ତି । ମଣିମା ଥରକୁଥର ଝାମ ଯାଉଛନ୍ତି । ସରସ୍ୱତୀ ଦେଈ କାହାକୁ ସମ୍ଭାଳିବେ ? ଏଣେ ନିଜର ତ ଠିକଣା ନାହିଁ । ଧାଈମା ପିଲା ଯୋଡ଼ିକୁ କୋଳରେ ଜାକିଧରିଛନ୍ତି, ମଣିମାଙ୍କ ମୁହଁରେ ପାଣିଛିଟାମାରି ଚେତା କରାଉଛନ୍ତି । ଦଶବାରଟା ପୋଇଲୀ ପରିଜନ ଆସି ସେହି ତିନିଜଣଙ୍କୁ ଉଆସ ଭିତରକୁ ଟେକିନେଇଗଲେ । ଆଜି ଗାଁଲୋକଙ୍କ ଘରେ ଚୁଲିରେ ଲୁଣ୍ଡା ପଡ଼ିବାକୁ ନାହିଁ । କାହାରି ମୁହଁରେ ଆଉ କିଛି କଥା ନାହିଁ, କେବଳ ଉତ୍ତରରାୟଙ୍କ କଥା ।

ଚାନ୍ଦମଣି ଦେଈଙ୍କର ସ୍ୱାମୀ ଥିଲେ ଜୀବନର ଶ୍ରେଷ୍ଠ ଧନ—ସାକ୍ଷାତ୍ ଦେବତା । ତାଙ୍କର ଯାହା କିଛି ବାରବ୍ରତ, ଧର୍ମକାର୍ଯ୍ୟ କେବଳ ସ୍ୱାମୀଙ୍କ ମଙ୍ଗଳପାଇଁ । ସ୍ୱାମୀଙ୍କ ପ୍ରିୟ କାର୍ଯ୍ୟ ବିନା ସେ ଆଉ କିଛି କାର୍ଯ୍ୟ ଜାଣୁନଥିଲେ । ସ୍ୱାମୀଙ୍କର କୌଣସି କାର୍ଯ୍ୟ ଅନ୍ୟ ଦାସଦାସୀ କରିବେ, ଏଇଟା ତାଙ୍କର ଇଚ୍ଛା ନୁହେଁ । ସବୁବେଳେ ଯେମନ୍ତ ସ୍ୱାମୀଙ୍କ ଆଦେଶକୁ କାନଡେରି ରହିଥା'ନ୍ତି । ବର୍ତ୍ତମାନ ସ୍ୱାମୀଙ୍କୁ ହରାଇ ଚାନ୍ଦମଣି ଦେଈଙ୍କର ସମସ୍ତ ଆଶା ଭରସା—ସମସ୍ତ ଆନନ୍ଦଉତ୍ସବ ଅନ୍ଧକାରରେ ମିଳାଇଯାଇଛି ।

ଉତ୍ତରରାୟଙ୍କ ବିୟୋଗର ଆଜି ଚତୁର୍ଥ ଦିବସ । କୁଳର ପ୍ରଥା ଅନୁସାରେ ସାତଦିନଠାରୁ କ୍ରିୟା ଆରମ୍ଭ ହେବ । ସଦର ମଫସଲର ସମସ୍ତ ଅମଲା, ଗଡ଼ର ମୁଖିଆ ଲୋକମାନେ ଏବଂ ସ୍ୱୟଂ ଅରିଦମନ ଛୋଟରାୟ ଓ ତାଙ୍କ ପୁତ୍ର ପୀତାମ୍ବର ଛୋଟରାୟ ଉପସ୍ଥିତ । କ୍ରିୟା ବିଷୟରେ ଆଲୋଚନା ଚାଲିଛି । ଦୁଇଜଣ ପାଇକ ଧାଇଁଯାଇ ବୁଝି ଅଇଲେ, ନାଜରବାବୁ କଟକରୁ ଅଇଲେ । ଛୋଟରାୟ ଆଜ୍ଞା କଲେ, ''ଭଲହେଲା, ସମସ୍ତେ ଏବେ ମିଳିମିଶି ବିଚାର କରି ତାଲିକା ଠିକ୍ କରିବା ।''

ଆପଟମାନେ ଉଆସ ସିଂହଦୁଆର ଆଗରେ ସବାରିଟା ଦୁମ୍ କରି ଥୋଇଦେଲେ । ନଟବର ଦାସେ ସବାରିରୁ ବାହାରି ସଳଖେ ସଳଖେ ଉଆସ ଭିତରକୁ ଚାଲିଛନ୍ତି । ''ମୋ ଚାନ୍ଦରେ...ମୋ ନରୁରେ...ଏ ଧାଇମା'—'' ଏପରି ବାରମ୍ବାର କହି ନାଜରବାବୁ ଭୂଇଁରେ ଲୋଟିଯାଉଛନ୍ତି । ଚାନ୍ଦମଣି ଦେଈ କାନ୍ଥକୁ ଆଉଜି ପିତୁଳାଟି ପରି ବସିଛନ୍ତି । ଘଡ଼ିକ ଉତ୍ତାରେ ମଣିମାଙ୍କୁ ଶୁଣାଇ କହିଲେ, ''ଧାଇମା' ! ମୁଁ ଆସିଥିଲେ କ'ଣ ଏଡ଼େ କଥାଟା ହେଇଥା'ନ୍ତା ? ସେହି ଯେ ଡାକ୍ତରଟା ଆସିଥିଲା, କଟକରେ ତା କଥା ସମସ୍ତଙ୍କୁ ଜଣା ।'' ଅର୍ଥାତ୍, ନାଜରବାବୁ ବୁଝାଇଦେଲେ କୌଣସି ଦୁଷ୍‌ମନ ସେହି ଡାକ୍ତର ହାତରେ ଉତ୍ତରରାୟଙ୍କୁ ମରାଇଦେଲେ । ଧାଇମା'ଙ୍କୁ କଥାଟା ସ୍ୱପ୍ନ ଭଳି ଲାଗୁଛି । ବଲବଲ କରି ନାଜରଙ୍କ ମୁହଁକୁ ଚାହିଁଛନ୍ତି ।

ଧାଇମା' କହିଲେ, ''କ'ଣ କହୁଛୁରେ ନଟ ?'' ଧାଇମା' ନଟକୁ ଭଲକରି ଚିହ୍ନନ୍ତି । ହେଲେ ପଚରାପଚରି କରି କଥାଟା କ'ଣ ବୁଝିବାକୁ ବେଳ କାହିଁ । ସହଜେ ବୁଦ୍ଧିଟା ବର୍ତ୍ତମାନ ଯେ ବଣା । ନଟବରବାବୁ ମନ ମଧ୍ୟରେ କିଛିଟା ଖୁସି ହୋଇଗଲେଣି । କହିଲେ, ''ପଛକେ ବଳେବଳେ କଥାଟା ପଦାରେ ପଡ଼ିବ । କଟକ ହାକିମ ତୁମ ପାଖକୁ ଖବର ଦେଇଛନ୍ତି, ଖାଲି ପିଲା ଦିଓଟିକୁ ସମ୍ଭାଳି ରଖିବ, ବାହାରକୁ ଛାଡ଼ିବ ନାହିଁ । ହାକିମ ନିଜେ ଆସି ସବୁକଥା ସଜିଲ କରିଦେବେ । ଉକ୍ଷୁଣି ଉଆସରେ ପହରାଦେବା ସକାଶେ ମୋ ସାଙ୍ଗରେ ସିପାହୀ ପଠାଇଛନ୍ତି ।''

ସରସ୍ୱତୀ ଦେଈ ତ ଏକାବେଳକେ କାଠମୂର୍ତ୍ତି । କହିଲେ, ''ନଟ, କ'ଣ କରିବାକୁ ହେବ କର ।''

ନାଜରବାବୁ କହିଲେ—''କଚେରି ତହବିଲରେ ଯେତେ ନଗଦ ଥିଲା ସବୁ ବାଣ୍ଟିକୁଣ୍ଟି ନେଇ, ମୁହଁ ପୋଛି ତୁନି ହୋଇ ବସିଛନ୍ତି । ହାକିମ ଟଙ୍କା ଦେଇ ପଠାଇଛନ୍ତି—କ୍ରିୟା ତୁଲେଇନେବି । ଦୁଇ ଚାରି ହଜାର ନିଅଣ୍ଟ ପଡ଼ିଲେ ତୁମେ ଚଳେଇଦେଇଥିବ । ମୁଁ କଟକରେ ଗୋଡ଼ ଦେବି ଆଉ ପଠାଇଦେବି ।''

ସରସ୍ୱତୀ ଦେଈ କହିଲେ, ''ନା ରେ ନା ! ଚାନ୍ଦର ତହବିଲରେ ଦୁଇ ହଜାର ଟଙ୍କା ଅଛି—ନେବୁ ତ ନେଇ ଯା ।''

ନଟବରବାବୁ—''ରାମ ! ରାମ ! ସେ ଟଙ୍କା ଯେ ମୋ ପାଇଁ କାଳିଆ ଗରଳ, ମୋ ପକ୍ଷରେ ଗୋରକ୍ତ; ସେ ଟଙ୍କା ଛୁଇଁବି ? ହେଲେ ନିହାତି ଅଚଳ ହେଲେ ଦୁଇତିନିଦିନ ପାଇଁ ପଠାଇଦେବ ।''

ଧାଈମା' ପାଖରୁ ମେଲାଣି ଘେନି ନାଜରବାବୁ ମନ୍ଦିରକୁ ଅଇଲେ । ରାତି ହେବାରୁ ସମସ୍ତେ ଗଲେଣି । ଛାମୁକରଣ ପଚାରିଲେ, ''ଆଜି ରାତିରେ ଆପଣଙ୍କର ଠା' କଣ ହେବ ? ପ୍ରସାଦ ପ୍ରସ୍ତୁତ ଅଛି ।'' ନାଜରବାବୁ ଉପହାସ କରି କହିଲେ, ''ଆମକୁ ବଡ଼ ଭୋକ ଲାଗୁଛି-ହଁ-ପ୍ରସାଦ ସେବା କରିବୁଁ ? ଯା ଯା, ପ୍ରସାଦ ସେବା କରି ତୁମେ ଶୋଇପଡ଼ ।''

ନାଜରବାବୁ ସବାରି ଭିତରେ ବୋଧକରୁଁ ଅଧଘଣ୍ଟାଏ ସନ୍ଧ୍ୟା କଲେ । ବେହେରା ଗଉଡ଼ ଭଲ ପାଣି ଟୁକୁଣାଏ ଛାଣି ରଖିଦେଇଥିଲା । ସନ୍ଧ୍ୟା ଉତ୍ତାରେ ଦୁଇଢାଳ ଜଳ ଢକ ଢକ କରି ପିଇଦେଲେ । ପାନ-ଗୁଡ଼ାଖୁ ପ୍ରସ୍ତୁତ ଥିଲା । ସବାରି ଭିତରେ ଢେର୍ ବେଳଯାଏଁ ଭଡର ଭଡର ହୁକା ଶବ୍ଦ ଶୁଭୁଥିଲା ।

## ନାଜରବାବୁଙ୍କ ବନ୍ଦୋବସ୍ତ

ଭୋର । କଚେରି ମେଲାରେ ବାରିକ ଗାଲିଚାଟାଏ ପାରି ବଡ଼ ମାଣ୍ଡିଟାଏ ଥୋଇଦେଲା । ନାଜର ବସି ଭଡର ଭଡର କରି ହୁକା ଟାଣୁଥାନ୍ତି । ସଦର ମଫସଲ ସମସ୍ତ ଅମଲାଙ୍କୁ ଡକାଇପଠାଇଲେ । କଡ଼ା ହୁକୁମ ଜାରି—ପାଞ୍ଜିଆ କରଣ ତହବିଲ ଦାଖଲକର । କଲଟର ସାହେବଙ୍କ ହୁକୁମ, ଚାରିଘଣ୍ଟା ମଧ୍ୟରେ ଦାଖଲ କରିବାକୁ ହେବ । ପିଆଦାମାନେ ତ କଟକରୁ ଆସିଥିଲେ, ଉଆସର ସଦର ବେଣ୍ଟ ଦୁଆରେ ପିଆଦା ବସିଗଲେ—କେହି ଉଆସ ମଧ୍ୟକୁ ଯାଇପାରିବ ନାହିଁ । ଭିତରୁ ବାହାରିବାର ବାଟ ବନ୍ଦ ।

ପାଞ୍ଜିଆ କରଣ ଅସ୍ତବ୍ୟସ୍ତ । କ୍ରିୟା କଥା ଉଠାଇଲେ ନାଜରବାବୁ ଭାରି ଖପା । ମଣିମାଙ୍କ ନିଜ ଭାଇ, ପୁଣି ହାକିମର ଲୋକ, ସମସ୍ତେ ହାତବାନ୍ଧି ବସିଛନ୍ତି । ନାଜରଙ୍କ ଇଚ୍ଛା ଅଳ୍ପଖରଚ, ଅଧାମାଗଣା, ଅଧା କାଳି ର'ଠ କରି ଚଳେଇବେ । ଟଙ୍କା ବଞ୍ଚାଇବାକୁ ହେବ । ଏହା ଦେଖି ସମସ୍ତେ ଯାଇ ଛୋଟରାୟଙ୍କୁ ଧରି ପଡ଼ିଲେ । ଛୋଟରାୟ ସାମନ୍ତ କହିଲେ, ''ନଟବରବାବୁ, କାଗଜ ବୁଝାବୁଝି ପଛକେ ହେବ, ବର୍ତ୍ତମାନ କ୍ରିୟାଟା ଚଳିଯାଉ ।''

ନାଜରବାବୁ ଖପାହୋଇ କହିଲେ, ''ହଁ ହଁ, ଆପଣ ତୁନିହେଉନ୍ତୁ । ଆଉ କିଛି କଥା କହିଲେ ସରକାରୀ କାର୍ଯ୍ୟରେ ବାଧା ଦେଉଛନ୍ତି ବୋଲି ସାହେବଙ୍କୁ ଜଣାଇବି ।''

ଛୋଟରାୟଙ୍କ ମୁଣ୍ଡରେ ଯେପରି ନିଆଁଗୁଡାଏ କିଏ ଅଜାଡ଼ିଦେଲା । ତମ୍ପ ସାପର ଲାଞ୍ଜ ମୋଡ଼ିଦେଲାପରି ଫଁ-ଫଁ ହେଉଛନ୍ତି । ଖଣ୍ଡାଏତମାନଙ୍କ ପ୍ରକୃତି ଧନ ଦେବେ, ଜୀବନ ଦେବେ, ଅପମାନ ସହିପାରିବେ ନାହିଁ । ପେସ୍କାରବାବୁ ପୀତାମ୍ବର ପାଖରେ ଛିଡ଼ାହୋଇଥିଲେ, ବାପାଙ୍କୁ ଧରି ଭିଡ଼ିନେଇଗଲେ । ତାଙ୍କର ଇଚ୍ଛା—ଏଇଟା କ'ଣ କରୁଛି କରୁ—କିଲାଟା ତ ବଳେ ସରକାର ଅଧୀନରେ ରହିବ, ସବୁ ମାମଲା ବଳେ ଠିକ୍‌ହୋଇଯିବ ।

ଛୋଟରାୟ ସବାରିରେ ବସି ଫେରିଯିବାକୁ ଆଦେଶ ଦେଲେ । ହରିବୋଲ ବାରିକ ପଛରୁ ଧାଇଁଛି । ସେ ଗହୀର ବିଲ ମଝିରେ ସବାରି ଆଗ ଦଣ୍ଡାଟି ଭିଡ଼ିଧରି ବସାଇଦେଲା । ଆପଟମାନେ ସବାରି ଥୋଇଦେଲେ । ସଦର କରଣ ଗଙ୍ଗାଧର ମହାନ୍ତିଏ ନସରପସର ହୋଇ ପଛରେ ଧାଇଁଛନ୍ତି । ହରିବୋଲ ବାରିକ କହିଲା, ''ଆଜ୍ଞା ମଣିମା, ଏ କ'ଣ ହେଉଛି ? କାହାକୁ ମାନ କରୁଛନ୍ତି ? ଏ କାର୍ଯ୍ୟ କାହାର ? ଅପଯଶଟା କିଏ ମୁଣ୍ଡେଇବ ? ସବୁ ପଛକୁ ଫୋପାଡ଼ିଦେଉନ୍ତୁ—ବାହୁଡ଼ାବିଜେ କରନ୍ତୁ ।'' ଛୋଟରାୟ ତ ଏକାବେଳକେ ପାଣି । ଏଇଟା ମଧ୍ୟ ଖଣ୍ଡାଏତ ଜାତିର ସ୍ୱଭାବ—ତାଙ୍କୁ ସାକୁଲେଇ କହି ନ୍ୟାୟ-ଅନ୍ୟାୟ ବୁଝାଇଦେଲେ କଥାଟି ବୁଝନ୍ତି । ଗହୀର ବିଲ ମଧ୍ୟରେ ପହରେ ଯାଏଁ ତିନିଜଣଙ୍କ ଭିତରେ କଥାଭାଷା ଚଳିଲା । ତା'ପରେ ଛୋଟରାୟ ବିଜେହୋଇଗଲେ ।

ପାଞ୍ଜିଆ କରଣମାନେ ଆୟୋଜନରେ ଲାଗିଲେ । ପ୍ରତିଦିନ ହଜାର ହଜାର ବ୍ରାହ୍ମଣ, ବୈଷ୍ଣବ, କାଙ୍ଗାଳି ଖାଉଛନ୍ତି—ପଦାର୍ଥ ସରିବାକୁ ନାହିଁ । ଏକା ଛୋଟରାୟଙ୍କ ଉଆସରୁ ଢେର୍ ଢେର୍ ସରଞ୍ଜାମ ଆସିଲାଣି । ଛୋଟରାୟ ଉଆସରେ ବସି ସବୁ

କାମ ବରାଦ କରୁଛନ୍ତି । ଜିନିଷମାନ କାହୁଁ ଆସୁଛି, ଟଙ୍କା କିଏ ଦେଉଛି, ନାଜରବାବୁ କିଛି ଜାଣିପାରୁନାହାନ୍ତି । ଡାକିଲେ ପାଖେ ପଶିବାକୁ କେହି ନାହିଁ ।

ଉଆସ ଭିତରେ ଧାଈମା'ଙ୍କ ପାଖରେ, ମଣିମାଙ୍କ ପାଖରେ ଲଳିତା କହୁଥାଏ, ''ନାଜରବାବୁ ସବୁ କାମ ତୁଲାଉଛନ୍ତି ।'' ଉଆସ ଭିତରେ ସେଇ କଥା ବିଶ୍ୱାସ— ବାହାରୁ କିଛି ଖବର ମିଳିବାକୁ ନାହିଁ । ବ୍ରାହ୍ମଣ-ବିଦାକି ସମୟରେ ନାଜରବାବୁ ବଳେ ବଳେ ଆପଣା ତରଫରୁ କିଛି ଟଙ୍କା ଦେବାର ଦେଖାଗଲା । ଗଡ଼ର ସଦର ଦ୍ୱାରୀ କହିଲା—ଅଧିକ ରାତ୍ରରେ ଗଡ଼ ଭିତରୁ ଗୋଟିଏ ସ୍ତ୍ରୀଲୋକ ଦୁଇଟା ଓଜନିଆ ଥଳି ଆଣି ନାଜରଙ୍କ ହାତରେ ଦେଇଗଲା । ଏଥକୁ କେହି ଅନୁମାନ କଲେ ଯେ, ବ୍ରାହ୍ମଣବିଦାକି ସକାଶେ ଭିତରପ୍ରସ୍ତରୁ କିଛି ଆସିଥିବ । ହେଲେ, ବିଦାକିଟା ଅତି ସାମାନ୍ୟ, ଦୁଇ ଥଳି ତ ନୁହେଁ ! ବ୍ରାହ୍ମଣ, ବୈଷ୍ଣବ, କାଙ୍ଗାଳ ମହାଆନନ୍ଦରେ ଆଶୀର୍ବାଦ କରୁ କରୁ ବାହୁଡ଼ିଗଲେ ।

## ରିପୋର୍ଟ ଲେଖାଇ

ରାତି ଅନୁମାନ ପହରକ ଭିତରେ । ନଅର ଭିତର ବେହରଣ ପିଣ୍ଡାରେ ମଣିମା ଚାନ୍ଦମଣି ଦେଇ ପିଣ୍ଡା ବାଡ଼କୁ ଆଉଜି ବସିଛନ୍ତି । ଲଳିତା (ଚିତ୍ରକଳା) ଡେବିରି ହାତଟା ତାଙ୍କ ପିଠିରେ ବୁଲାଉଛି, ଖାଇବା ହାତରେ ପଙ୍ଖାଟାଏ ଧରି ବିଞ୍ଚୁଛି । ନାଜର ଆଉ ଧାଈମା' ଦୁଇଜଣ ବସିଛନ୍ତି । ଆଲୁଅଟାଏ ମିଞ୍ଜିମିଞ୍ଜି ହୋଇ ଜଳୁଛି ।

ନାଜରବାବୁ କଥା ପକାଇଲେ—''ଏ ଧାଈମା' ! ମୁଁ ନ ଆସିଥିଲେ କ'ଣ କ୍ରିୟା ହୋଇଥାନ୍ତା ?''

ଲଳିତା କହିଲା, ''ସେଥିଲାଗି ତ ମା' ତରବର ହୋଇ ବାବୁଙ୍କୁ ପଠାଇଦେଲେ । ମା' ମୋ ହାତରେ ଆପଣଙ୍କୁ ଖବର ଦେଇଛନ୍ତି, ଖାଲି ବାବୁଙ୍କ କଥା ଶୁଣିବେ, ଆଉ କାହାରିକି ପରତେ ଯିବେ ନାହିଁ ।''

ନଟବରବାବୁ କହିଲେ, ''ସବୁ ତ ହେଲା, ମୁଲକ କିପରି ସମ୍ଭଳାଯାଏ ? ଏ ଥାଳ ଖଣ୍ଡକ ଯେ ପିଲା ଦିଓଟିଙ୍କର ଆଶ୍ରା ।''

ଧାଈମା' କହିଲେ, ''ମଉସାଙ୍କୁ ଆଉ ପୁରୁଣା ପାଞ୍ଜିଆମାନଙ୍କୁ ଡକା, ସମସ୍ତେ ବସି ବିଚାର କଲେ ଯାହା ଭଲ ହୁଏ କର ।''

ନାଜର କହିଲେ, ''ଏ ଧାଈମା' ! ତୋର ମୁଁ ନା ତୋର ଗୋସେଁୟାର ମୁଁ ? ମୁଁ ତ ଛ'ଥର ଡାକିଲିଣି, କାହାରି ସୋର ଶବଦ ନାହିଁ । କଟକ ହାକିମ କହିଛନ୍ତି, ଚାନ୍ଦମଣି

ନାମରେ ମୁଲକ ରହିବ—ତୁମେ ଟଙ୍କାପଇସାଗୁଡ଼ାକ ସମ୍ଭାଳି ରଖିବ । ହାକିମ ତ ସବୁକାମ କରିବେ । ମୁଁ ତୁମ କଥା ହାକିମଙ୍କୁ ଆଉ ହାକିମଙ୍କ କଥା ତୁମକୁ ଜଣାଉଥିବି ।''

ଧାଇମା' କହିଲେ, ''ଆଉ ସବୁ କଥା ଯାହାହେଉ—ପିଲା ଦିଓଟି କିପରି ରକ୍ଷାପାଆନ୍ତି, ଏତିକି ବିଚାର କର ।''

ନାଜରବାବୁ—''ମୋର ତ ସେଇ କଥା, ମୁଁ କ'ଣ ଟଙ୍କା ସୁନାର ସାଇତିଆ ହୋଇଛି ? ପିଲା ଦିଓଟି ଉପରେ ଅମୃତ ବରଷୁ । କାଲିକି କାଲି ଛତି ଧରି ରଜା ହୋଇ ବସିବେ । ମୁଁ ଯେ ଏତେ ଧନ ସମ୍ଭାଳିଛି, କାହା ଲାଗି ? ଏବେ ସମସ୍ତଙ୍କର ଇଚ୍ଛା ଦୁଇ ସମ୍ପତ୍ତିକୁ ଏକ କରିବେ । ପିଲା ଯୋଡ଼ିକ ସେମାନଙ୍କ ଆଖିର ବାଲି ହୋଇଛନ୍ତି ।''

ସରସ୍ୱତୀ ଦେଈ କଥାଟା ଶୁଣି ଚମକିପଡ଼ିଲେ । କହିଲେ, ''କ'ଣ କହୁଛୁରେ ନଟ, କ'ଣ କହୁଛୁ ? ନା-ନା-ତୁ ବୁଝୁନାହୁଁ ପରା—ଏଡ଼େ କଥାଟା ସେମାନେ ପାଞ୍ଚିଥିବେ ନା ?''

ସରସ୍ୱତୀ ଦେଈ ବୁଦ୍ଧିମତୀ, ସଂସାରର ଅନେକ କଥା ବୁଝନ୍ତି । ମାତ୍ର ଆଜି ନାଜର ନଟବର ଦାସଙ୍କ ବୁଦ୍ଧିଠାରେ ତାଙ୍କର ସବୁ ବୁଦ୍ଧି ପରାସ୍ତ । କାନ୍ଦୁଣୁମାନ୍ଦୁଣୁ ହୋଇ କହିଲେ, ''ନଟ ! ସାହେବ ଯାହା କହିଛନ୍ତି କର । ଧର୍ମ ଜାଣେ, ତାଙ୍କର ଯାହା ଇଚ୍ଛା କରନ୍ତୁ । ହାକିମଙ୍କୁ କହିବୁ, ଖାଲି ପିଲାଦିଓଟିଙ୍କ ଉପରେ ଦୟା ରଖିଥିବେ ।''

ନଟବର ଦାସେ ଖଣ୍ଡିଏ ରିପୋର୍ଟ ଲେଖିଆଣିଲେ । ସେଥିରେ ମଣିମାଙ୍କର ଦସ୍ତଖତ ଦରକାର । ସରସ୍ୱତୀ ଦେଈଙ୍କ ଅନୁରୋଧ, ଚିତ୍ରକଳାର ସମସ୍ତ ଆୟୋଜନ ବ୍ୟର୍ଥ ହୋଇଗଲା—ଯେଣୁ କି ମଣିମାଙ୍କର ବୁଦ୍ଧି ଲୋପ, ଇନ୍ଦ୍ରିୟ ଦୁର୍ବଳ । କେବଳ ରିପୋର୍ଟରେ ମଣିମାଙ୍କ ମୋହରଟା ବସାଇ ଦିଆଗଲା । ନାଜରବାବୁଙ୍କ ନିହାତି ଅନୁରୋଧରେ ସରସ୍ୱତୀ ଦେଈ ମୋଡ଼ମୋଡ଼ ହୋଇ ମଣିମାଙ୍କର ନାମଟା ଲେଖିଦେଲେ ।

## ଅଳଙ୍କାର ପୋଟଳି

ଗଲା ରାତି ପରି ଆଜି ମଧ ଠିକ୍ ସେହି ବେଳରେ ବେହରଣ ପିଣ୍ଡାରେ ସମସ୍ତେ ଯେ ଯାହା ଜାଗାରେ ବସିଛନ୍ତି । ନଟବର ଦାସେ ଏକଥା ସେକଥା ପାଞ୍ଚକଥା ଉତ୍ତାରେ କହିବସିଲେ, ''ଧାଇମା' ! ସବୁତ ସରିଲା—ହଁ—ମୁଁ କଟକ ଯାଉଛି । ଗୋଟିଏ କଥା

ମନରେ ପଡ଼ିଗଲା । ମୁଁ କହୁଥିଲି, ଅଳଙ୍କାର ଦି'ଖଣ୍ଡ ସାଇତିକରି ରଖିଦେଇଗଲେ ଭଲହୁଅନ୍ତା ।''

ଉଆସର ବହୁମୂଲ୍ୟ ସଂପଦଗୁଡ଼ାକ ଦେଖାଇବାକୁ ଧାଈମା'ଙ୍କର ଇଚ୍ଛା ବଳୁନାହିଁ । କହିଲେ, ''ସେଗୁଡ଼ିକ କେଉଁଠି ପଡ଼ିଛି—ସେହି ଅମଙ୍ଗଳିଆ ଦିନ ଚାନ୍ଦ ଦେହର ଅଳଙ୍କାରଗୁଡ଼ିକ ପହଡ଼ ପଲଙ୍କ ତଳକୁ ଫୋପାଡ଼ିଦେଇଛି, କ'ଣ ହେଲା ଜାଣେନା ।''

ନାଜରବାବୁ ପୁଣି କହିଲେ 'ଧାଈମା' ! ମୁଁ ଆସିବାବେଳେ ହାକିମ ବାରବାର କରି କହିଛନ୍ତି, ସବୁ ଅଳଙ୍କାର ଏକ ଜାଗାରେ ପୁଟୁଳା କରି ବନ୍ଧାଯିବ, ସେହି ପୁଟୁଳା ସିନ୍ଦୁକରେ ରହିବ, ସେଥିରେ ଯୋଡ଼ାଏ ତାଲା ପଡ଼ିବ । ଗୋଟିଏ କଞ୍ଚିକାଠି ରହିବ ତୁମ ହାତରେ, ଆଉ ଗେ ଏ କଞ୍ଚିକାଠି ରହିବ କଟକ ଖଜଣାଖାନା ଲୁହା ସିନ୍ଦୁକରେ । ସେଠି ଚାରିଜଣ ସିପାହି ବନ୍ଧୁକ କାନ୍ଧରେ ପକାଇ ଦିନରାତି ଖାଡ଼ା ପହରା—ମାଛିଟିଏ ଗଳିବାକୁ ବାଟ ନାହିଁ ।

ସରସ୍ୱତୀ ଦେଈ ଦଣ୍ଡେ ରହିଲେ, କ'ଣ ଗୋଟାଏ କଥା ମନରେ ପାଞ୍ଚିଲେ । କିଛି କଥା ନବୋଲି ଦୀପଟାଏ ଧରି ଛିଡ଼ାହୋଇଗଲେ । ''ଆ ନଟ ଆ''—କହି ସା'ନ୍ତଙ୍କ ପହଡ଼ଘର ଭିତରକୁ ଯାଇ କହିଲେ—''ଯା ନଟ, ପଲଙ୍କ ତଳେ ସେଗୁଡ଼ାକ ପଡ଼ିଛି, ଗୋଟେଇଗାଟେଇ ଆଣ ।'' ନାଜରବାବୁ ଅଳଙ୍କାର ଗୋଟେଇବାବେଳେ ପ୍ରତ୍ୟେକଟା ଭଲ କରି ଦେଖିଯାଉଛନ୍ତି—ଜଡ଼ଉ ଅଳଙ୍କାରର ହୀରାନୀଳା ମୁକ୍ତାଗୁଡ଼ାକ ଦୀପ ଆଲୁଅରେ ଜୁଳୁଜୁଳି ପୋକପରି ଜକଜକ କରୁଥାଏ । ସେହି ଆଲୁଅଗୁଡ଼ାକ ଯେମନ୍ତ ନାଜରବାବୁଙ୍କ ହୃଦୟରେ ଚହଟିଯାଉଛି । କହିଲେ, ''ଧାଈମା' ! ଆଉ ଯେଉଁଠି ଯାହା ଅଛି ଦେ, ଏକା ସାଙ୍ଗରେ ବାନ୍ଧିଦିଏ ।''

ଧାଈମା' ଆଉ ଗୋଟିଏ ବଡ଼ ବାକ୍ସ ଫିଟାଇ ଗୁଡ଼ାଏ ଅଳଙ୍କାର ବାହାର କରି ଦେଲେ । ନାଜରବାବୁ ଖଣ୍ଡେ ଚିରା ପାଟକନାରେ ଭଲକରି ବାନ୍ଧୁଥାନ୍ତି । ଗୋଟାଏ ବଡ଼ ସିନ୍ଦୁକରେ ଯୋଡ଼ାଏ କୋଳପ ପଡ଼ିଲା । ନାଜର ଗୋଟାଏ କଞ୍ଚିକାଠି ଧାଈମାଙ୍କ-ହାତକୁ ବଢ଼ାଇଦେଇ ଚଞ୍ଚଳ ଘରୁ ବାହାରି ଅଇଲେ । ନଟ ଅନ୍ଧାରରେ ଯାଉଛି ମନରେକରି ଧାଈମା କଞ୍ଚିକାଠିଟା ସା'ନ୍ତଙ୍କ ପହଡ଼ ପଲଙ୍କ ମାଣ୍ଡି ତଳକୁ ଗୁଞ୍ଜିଦେଇ ଆଲୁଅ ଦେଖାଇବାପାଇଁ ବାହାରିଗଲେ । ସରସ୍ୱତୀ ଦେଈ କଞ୍ଚିକାଠି ରଖିବା ଜଳାକବାଟି ଫାଙ୍କ ବାଟେ ଯୋଡ଼ିଏ ଆଖି ଦେଖୁଥାଏ । ନାଜରବାବୁ ବସାକୁ ଅଇଲେ । ଚିତ୍ରକଳା ଦୀପ ଦେଖାଇ ଦେହୁଡ଼ି ଦୁଆର ଯାଏ ଅଇଲା । ଦୁଇଜଣ ମୁହଁ ଚୁହାଁଚୁହିଁ ହୋଇ ମୁରୁକି ମୁରୁକି ହସୁଥା'ନ୍ତି—ଯେମନ୍ତ ଆଖିରେ ଆଖିରେ କିଛି କଥା ହୋଇଗଲା ।

ଅଳଙ୍କାର ରଖାଯିବା ତିଆସିଦିନ ଗଡ଼ ନରିପୁରରେ ପ୍ରଚାର ହେଲା, କିଲଟର ସାହେବଙ୍କଠାରୁ ଜରୁରୀ ଚିଠିପାଇ ନାଜରବାବୁ ରାତାରାତ କଟକ ରମାନା ହୋଇଗଲେ । ପୋଇଲୀ ଲଳିତା ମଧ ଚାଲିଯାଇଛି । ବାବୁଙ୍କ ଯାତ୍ରା ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଏକଥା କାହାରିକୁ ଜଣାନଥିଲା । ପାଇକମାନେ କହନ୍ତି ଯେ, ନାଜରବାବୁ ଯେମନ୍ତ କାହାରି ଗଡ଼ ଭିତରୁ ବାହାରିଆସିବାକୁ ଅପେକ୍ଷା କରୁଥିଲେ । ରାତି ଛ'ଘଡ଼ି ସରିକି ଗୋଟିଏ ସ୍ତ୍ରୀ ଗଡ଼ ଭିତରୁ ବାହାରି ଅଇଲା । ତାହାର କାଖରେ ଗୋଟିଏ ପୁଟୁଳି ଯେମନ୍ତ ଜକାଥିଲା । ନାଜରବାବୁ ତାହାକୁ ଧରି କଟକ ଚାଲିଗଲେ । କଟକ ଯିବାବେଳେ ସବାରି ଡାକ କେହି ଶୁଣିନାହିଁ ବା ମସାଲର ଆଲୁଅ ନଥିଲା ।

## ନାଜରଙ୍କ ରିପୋର୍ଟ

କଟକ ଜିଲ୍ଲାର କିଲଟର ସାହେବ—ମିଷ୍ଟର ଡାଉସନ୍ । ଅନେକ ଇଂରେଜ ହାକିମ ଅମଲା ଆଉ ପ୍ରଜାଙ୍କ ପକ୍ଷରେ ପ୍ରକୃତ ଧର୍ମର ଅବତାର । ସାହେବଙ୍କ ଜାଣିବାରେ ନାଜର ନଟବର ଦାସ ଜଣେ ଖୁବ୍ ବିଶ୍ୱାସୀ, ଚଲାଖ ଆଉ କାମିକା ଲୋକ । କୋଠିରେ କାର୍ଯ୍ୟ ଢେର୍—ମେମ୍‌ସାହେବ ଏକଲା ପାରି ଉଠନ୍ତି ନାହିଁ । ହେଲେ କ'ଣ ହେଲା, ନଟବର ବାବୁଙ୍କ ସକାଶେ ତାଙ୍କୁ କିଛି ବାଧେନାହିଁ । କିଛି ଗୋଟାଏ କାମ ପଡ଼ିଲେ 'ବ୍ୟାବୁ ବ୍ୟାବୁ' ବୋଲି ଡାକପକାନ୍ତି । ନାଜରବାବୁ ପ୍ରତିଦିନ ସକାଳୁ ଦଶଟା ଯାଏ କୋଠିରେ ହାଜର ଥାଇ ସବୁ କାର୍ଯ୍ୟ ତୁଲାଇନିଅନ୍ତି ।

ନାଜରବାବୁ ଗଡ଼ ନରିପୁର ବାହୁଡ଼ା ବାସିଦିନ ଖୁବ୍ ସକାଳେ ସାହେବଙ୍କ କୋଠିରେ ହାଜର ହେଲେ । କ'ଣ ଆଜି ଚେହେରାଟା ଅନ୍ୟ ରୂପ—ମୁହଁ ଶୁଖିଲା—ମୁଣ୍ଡବାଳଗୁଡ଼ିକ ନୁଖୁରା—ପିନ୍ଧା ଲୁଗା ମଇଳା । ମୁହଁ ଦେଖିଲେ ଜଣାଯାଏ କେତେଦିନ ହେଲା ଖାଇନାହାନ୍ତି, କାନ୍ଦି କାନ୍ଦି ଆଖିଯୋଡ଼ାକ ଫୁଲିଯାଇଛି । ନାଜରବାବୁଙ୍କ ଉପରେ ମେଲା ହୁକୁମ—ଯେତେବେଳେ ଇଚ୍ଛା ସାହେବଙ୍କ ପାଖକୁ ଚାଲିଯାଇ ଦେଖାକରିବେ, ଯାହା କହିବାର ଥିବ କହିବେ । ହେଲେ କ'ଣ ହେଲା, ନାଜରବାବୁ ହୁସିଆର ଲୋକ—ହାକିମ ମନ ଉଣ୍ଡି ଜଗିଜଗି ବାଟ ଚାଲିବା ଉଚିତ ।

ସକାଳୁ ଚା'ଖିଆ ସରିଲାଣି । ମେମ୍‌ସାହେବ ବାରନ୍ଦାରେ ଗୋଟାଏ ଝୁଲଣା ଚଉକିରେ ବସି ଧୀରେଧୀରେ ଝୁଲୁଛନ୍ତି, ହାତରେ ଛୁଞ୍ଚି ସୂତା ଆଉ ଖଣ୍ଡେ କନା । ସାହେବ ଆରାମଚଉକିରେ ବସି ଖବରକାଗଜଟାଏ ପଢୁଚନ୍ତି । ନାଜରବାବୁ ସାହେବଙ୍କ ଆଗରେ ହାଜର ହୋଇ ଚାରି ଛ'ଥର ସଲାମ କଲେ । ଉଭୟଙ୍କ ମଧରେ

ତେତେବେଳେ ଇଂରାଜୀରେ ସବୁ କଥା ହୋଇଥିଲା । ପାଠକମାନେ ସହଜରେ ବୁଝିବାଲାଗି ଆମ୍ଭେମାନେ ଓଡ଼ିଆରେ ତର୍ଜମା କରି ଦେଉଅଛୁଁ ।

ନାଜରବାବୁ କଷ୍ଟକରି ଯେମନ୍ତ କହିଲେ, ''ମୋ ଭଗିନୀପତି ନରିପୁର ଗଡ଼ର ଜମିଦାର ପ୍ରତାପଉଦିତ ମଲ୍ଲ ଉତ୍ତରରାୟ ମରିଯାଇଛନ୍ତି । ମୋ ଭଉଣୀ ଚାନ୍ଦମଣି ଦେଈ ବର୍ତ୍ତମାନ ବିଧବା''—କଥା କହିବା ବେଳେ ତାଙ୍କ ଦୁଇ ଆଖିରୁ ଝରଝର୍ ଲୁହ ବହିପଡୁଥାଏ । ସାହେବ କହିଲେ—''ମୁଁ ସେକଥା ଜାଣିଛି—ବର୍ତ୍ତମାନ ଇଷ୍ଟେଟଟା ସରକାରଙ୍କ ହାତକୁ ନେଇ ଭଲରୂପେ ବନ୍ଦୋବସ୍ତ କରାଇଦେବି । ତୁମ୍ଭ ଭଉଣୀର କିଛିମାତ୍ର କଷ୍ଟ ହେବ ନାହିଁ ।''

ନାଜରବାବୁ କହିଲେ, ''ତାଙ୍କ ଇଷ୍ଟେଟର ଆୟ ଖୁବ୍ କମ୍, ଉଆସରେ ଖାଇବାକୁ ଲୋକ ଢେର୍ । ସା'ନ୍ତଙ୍କ କ୍ରିୟାରେ କିଛି ଦେଣାହୋଇଯାଇଛି । ଇଷ୍ଟେଟ ସରକାରଙ୍କ ହାତରେ ରହିଲେ ଦପ୍ତର ଖରଚ ବଢ଼ିଯିବ, ଦେଣା ଶୁଝଟ ହୋଇପାରିବ ନାହିଁ । ଚାନ୍ଦମଣିର ଇଚ୍ଛା, ସେ ନାବାଳକ ପିଲାମାନଙ୍କ ପକ୍ଷରୁ ଇଷ୍ଟେଟ ଚଳାଇବ ।''

ସାହେବ କହିଲେ, ''ସେ ଯେ ହିନ୍ଦୁ ଜନାନା—ବାହାର କାମ କିପରି ଚଳାଇବେ ? ସେ ଲେଖିପଢ଼ି ଜାଣନ୍ତି କି ?''

ନାଜରବାବୁ କହିଲେ, ''ହଜୁର ! ଇଷ୍ଟେଟ କାମସବୁ ତାଙ୍କୁ ଜଣା । ଆଜକୁ ଆଠବର୍ଷ ହେଲା ଇଷ୍ଟେଟର କାର୍ଯ୍ୟ ଯେ ଭଲରୂପରେ ଚଳୁଛି, ସେଇଟା କେବଳ ଚାନ୍ଦମଣି ସକାଶେ । ଚାନ୍ଦମଣି ଲେଖିପଢ଼ିପାରେ, ଏହି ଦେଖନ୍ତୁ ତାହାର ରିପୋର୍ଟ ।''

ସାହେବ ରିପୋର୍ଟ ଖଣ୍ଡକରେ ଥରେ ଆଖି ବୁଲାଇଦେଇ କହିଲେ, ''ଏହା କି ଚାନ୍ଦମଣିର ଲେଖା ? ଅକ୍ଷରଗୁଡ଼ିକ ଗୋଟି ଗୋଟି ହୋଇ ସୁନ୍ଦର ଦିଶୁଛି ।''

ନାଜରବାବୁ କହିଲେ, ''ଏହି ରିପୋର୍ଟ ଖଣ୍ଡ ଚାନ୍ଦମଣି ନିଜେ ଲେଖିଛି । ଏହି ଦେଖନ୍ତୁ ତାହାର ଦସ୍ତଖତ ।''

ମେମ୍‌ସାହେବ ସବୁକଥା ନୀରବରେ ଶୁଣୁଥିଲେ । ସେ ଚାନ୍ଦମଣିକୁ ଇଷ୍ଟେଟ ବୁଝିବା କ୍ଷମତା ଦେବାକୁ ସୁପାରିଶ କଲେ । ଆଉ ଲୋଡ଼ା କ'ଣ ? ସାହେବ ଏକାବେଳକେ ହୁକୁମ୍ ଦେଲେ—ରିପୋର୍ଟ ଅଫିସରେ ନେଇ ଦିଅ । ଏ ଆଦେଶ ପରେ ନାଜରବାବୁ ଭକ୍ତି ଦେଖାଇ ପଛକୁ ହଟିଗଲେ ।

X X X X

ଦିନ ବାରଟା ମଧ୍ୟରେ ପହିଲା କଚେରି ମିସଲ ଆଗ ବେଞ୍ଚ ଉପରେ ମୁନ୍‌ସୀ ପେସ୍କାରବାବୁ ପୀତାମ୍ବର ବସି ନଥି ସଜଡ଼ାସଜଡ଼ି କରିବାରେ ବ୍ୟସ୍ତ । ହାକିମ

ପେସ୍କାରକୁ ହୁକୁମ କଲେ, "ନଥି ପେଶ୍ କର ।" ଏଇ ସମୟରେ ନାଜରବାବୁ ସଲାମକରି ରିପୋର୍ଟ ଖଣ୍ଡି ବଢ଼ାଇଦେଲେ । ପେସ୍କାରବାବୁ ରିପୋର୍ଟ ଖଣ୍ଡକର ଚାରିଧାଡ଼ି ପଢ଼ିଛନ୍ତି...

ହାକିମ ଦେଖି କହିଲେ—ଓଃ, ଜମିଦାର ଚାନ୍ଦମଣି ଦେଈଙ୍କର ରିପୋର୍ଟ ! ହୁକୁମ ଲେଖ—ଚାନ୍ଦମଣି ଦେଈ ନାବାଳକମାନଙ୍କ ପକ୍ଷରୁ ଜମିଦାରି ବୁଝିବା କ୍ଷମତା ପାଇଲେ । ସମସ୍ତ ଜମିଦାରିର ଭାର ତାଙ୍କ ହାତରେ ରହିବ । ସରକାର ତରଫରୁ ସମସ୍ତ କାର୍ଯ୍ୟ ତଦାରଖ ଓ କର୍ମଚାରୀମାନଙ୍କ ସିରସ୍ତା ଦେଖିବାକୁ ନାଜର ନଟବର ଦାସ ନିଯୁକ୍ତହେଲେ—କିନ୍ତୁ ସେଥିସକାଶେ କିଛି ଦରମା ପାଇବେନାହିଁ ।

ହୁକୁମ ଶୁଣି ପେସ୍କାରବାବୁଙ୍କ ମୁଣ୍ଡରେ ଯେମନ୍ତ ବଜ୍ରପଡ଼ିଗଲା । ତାଙ୍କୁ ବା କେଉଁ କଥା ଅଜଣା ? ଚାନ୍ଦମଣି ଦେଈ ନାମମାତ୍ର—ଏଣିକି ନଟବର ଦାସେ ହେଲେ କିଲ୍ଲାର ମାଲିକ । ସେ ସାହେବଙ୍କୁ କ'ଣ କହିବାକୁ ଯାଉଥିଲେ—ସାହେବ ହୁକୁମ କଲେ—ଦୋସରା ନଥି ନିକାଲୋ ।

ପେସ୍କାରବାବୁ ଏତେବେଳେ ବୁଝିଲେ ଯେ ତାଙ୍କ ଅସାବଧାନତାରୁ ଏପରି ଘଟିଲା । ସେ ଆପଣାକୁ ଦୋଷୀମଣି ସଡ଼ିପଡୁଛନ୍ତି । ଏବେ କିଲ୍ଲାର ଲୋକମାନଙ୍କୁ କ'ଣ କହିବେ ? ଲାଜରେ ମୁଣ୍ଡ ନଇଁଯିବ ।

## ଚାନ୍ଦମଣିଙ୍କ ହାଲ୍

ସ୍ୱାମୀଙ୍କ ବିୟୋଗ ଦିନରୁ ଚାନ୍ଦମଣି ଚେତନାହୀନ ହୋଇପଡ଼ିଥିଲେ । ସେ ଜଳଜଳକରି ଚାହିଁଥା'ନ୍ତି—ହେଲେ ଆଖିରେ ତେଜ ନାହିଁ—ପିଂଛଡ଼ା ପଡୁନାହିଁ—ଦେଖିବା ଶକ୍ତି ଅଛିକି ନାହିଁ ଜଣାଯାଉନାହିଁ । ସେ ଗୋଟାଏ ଜାଗାରେ ଡୁନିହୋଇ ପଡ଼ିଥା'ନ୍ତି । ବେଳେବେଳେ ଗଁ ଗଁ ଗର୍ଜନ କରି ପଡ଼ିଯା'ନ୍ତି । ପ୍ରଥମେ ଗୋଡ଼ହାତ ଥରେ, ତହିଁଉତ୍ତାରେ ଚେତା ବୁଡ଼ିଯାଏ ।

ଆଖପାଖ ଦଶ ପନ୍ଦର କୋଶ ମଧରେ ଜଣାଶୁଣା ସମସ୍ତ ବୈଦ୍ୟ ଲାଗିପଡ଼ିଛନ୍ତି । କେହି କହେ ଅପସ୍ମାର, କେହି କହେ ଝିମିଝିମିଆ ବାତ । ଧାଈମା' ଚାରି ଛ'ଥର ଭାଷା ଲେଖି ନାଜରବାବୁ ପାଖକୁ ଲୋକ ଦଉଡ଼ାଇ ଥକିଲେଣି । ଶେଷରେ କଟକରୁ ଗୋଟାଏ ବୈଦ୍ୟ ଅଇଲା—ରୋଗିଣୀଙ୍କ ବାଁହାତ ନାଟିକା ଚିପି ଅବସ୍ଥା ଶୁଣି ଠିକ୍ କଲା, ଏହା ଘୁମୁରିଆ ବାତ । ତିନିଟା କଳାରଙ୍ଗର ବଟିକା ଦେଇ କହିଲା, "ଅଦାରସ

ଓ ମହୁ ଅନୁପାନରେ ଏହି ବଟିକା ଘୋଟି ପିଆଇଦେବ—ରୋଗୀକୁ ପାଣିରେ ବୁଡ଼ାଇବ—କଂସାଏ ଦହି-ପଖାଳ ପଥ୍ୟ ଦେବ ।'' କାହିଁକି କେଜାଣି ଏ ଔଷଧଟା ଧାଇମା'ଙ୍କ ମନକୁ ପାଇଲାନାହିଁ ।

ପେସ୍କାର ପୀତାମ୍ବରବାବୁ ଦିନେ କଟକରୁ ଜଣେ ଭଲ ସାହେବ ସର୍ଜନ ଓ ଆଉ ଜଣେ ଆସିଷ୍ଟାଣ୍ଟ ସର୍ଜନକୁ ଧରି ଗଡ଼ ନରିପୁରରେ ଉପସ୍ଥିତ ହେଲେ । ଡାକ୍ତର ଦୁହେଁ ପରୀକ୍ଷା କରି ବୁଝିଲେ ରୋଗଟା ମେଲାଙ୍କଲିଆ । ସ୍ୱାମୀ ବିଚ୍ଛେଦର ଅତିରିକ୍ତ ଦୁଃଖରୁ ଏହା ହେଉଚି । ରୀତିମତ ଚିକିତ୍ସା ଚାଲିଲା । ଦୁଇ ତିନିମାସ ଉତ୍ତାରେ ଚାନ୍ଦମଣି ଟିକିଏ ସହଜରେ ବସିପାରିଲେ ।

ଏ ଡାକ୍ତରୀ ଚିକିତ୍ସା କଥା ନାଜରବାବୁଙ୍କ କାନରେ ପଡ଼ିଲା । ସେ ପେସ୍କାର ବାବୁଙ୍କୁ ଶୁଣାଇ କହିଲେ, ''ଥରେ ତ ଡାକ୍ତର ଘେନି ଯାଇଥିଲେ, ହାଲଟା ସମସ୍ତଙ୍କୁ ଜଣା— ପୁଣି ସେହି ଡାକ୍ତର ? ହଉ, ବୁଝାବୁଝି ହବା ଯେ ।''

ଡାକ୍ତରମାନଙ୍କ ପିଛେ କେତେ ଟଙ୍କା ଖରଚ ହେଲା, କିଏ ଟଙ୍କା ଦେଲା, କାହାରିକୁ ଜଣା ନାହିଁ । ହେଲେ, ନାଜରବାବୁ ଯେଉଁ ବୈଦ୍ୟରାଜଙ୍କୁ କଟକରୁ ପଠାଇଥିଲେ, ତା' ପାଇଁ ହଜାରେ ଟଙ୍କା ତହବିଲରୁ ଖରଚ ପଡ଼ିଥିବା ପଛକେ ଶୁଣାଗଲା ।

## ଉଆସର ଅବସ୍ଥା

ଉତ୍ତରରାୟଙ୍କ ବିୟୋଗ ଦିନଠାରୁ ଧାଇମା' ଚାନ୍ଦମଣିଙ୍କୁ କୋଳରେ ଧରି ବସିଥିଲେ । ବଡ଼ ପିଲାଟି ସ୍କୁଲକୁ ଯାଏ । ସାନପିଲାଟି କିଛି ବୁଝେନାହିଁ—ସବୁବେଳେ ଖେଳରେ ମନ । ସରସ୍ୱତୀ ଦେଈ ଏବେ ନିଶ୍ୱାସଟାଏ ପକାଇବାକୁ ବେଳପାଇଲେଣି । ଚାନ୍ଦମଣି ଏବେ କଥା ବୁଝୁଛନ୍ତି, କଥାର ଉତ୍ତର ଦେଉଛନ୍ତି । ସରସ୍ୱତୀ ଦେଈ ବେହରଣ ଅଗଣା ଆଉ ଉଆସ ପଛପଟ ବେଣ୍ଟପୋଖରୀ ଘାଟ ଛାଡ଼ି ଆଉ ଜାଗା ମାଡ଼ିନଥିଲେ । ଦିନେ ଉପରଓଳି ବାହାରପ୍ରସ୍ତ ସଦର କଚେରିକୁ ଯାଇ ଦେଖିଲେ ସିଂହଦ୍ୱାରର ଯାଉଁଳି କବାଟ ବନ୍ଦ । ଯୋଡ଼ାଏ ଦ୍ୱାରୀ ପାଇକ କଚେରି ମେଲାର ଗୋଟିଏ କୋଣରେ ଶୋଇପଡ଼ିଛନ୍ତି, ଆଉ ଜଣେ ତା' ପାଖରେ ବସିଛି । ପାଖରେ ନିଆଁ ବଡ଼ିଆରୁ ଅଳ୍ପ ଅଳ୍ପ ଧୂଆଁ ବାହାରୁଛି—ଅଧଶଗଡ଼େ ଭଳିଆ ପାଉଁଶ, ଆଉ ଅଧ ଟୋକେଇଏ ଖଣ୍ଡିଆ ପିକା ଗଦା । କଚେରି ଘରର କୋଣମାନ ବୁଢ଼ିଆଣୀ ଜାଲ ଓ ଅଳନ୍ଧୁରେ ଛନ୍ଦିହୋଇଗଲାଣି । ଘରତଳିଟା ପାରାଗୁହ, ଚମଚଟା ଲଣ୍ଡି, ଧୂଳିମାଟିରେ

ପୂରିରହିଛି । କାନ୍ଥରୁ ବାଲତିକୁ ବାଲଟି ଚୂନ ଖସିପଡୁଛି । ବାହାର ଅଗଣାରେ ଆଣ୍ଠୁଏ ବହଳ ଅଳିଆ, ଶୁଖିଲା ପତର ଜମାହୋଇଛି । ଖୋଲା ଆଲମାରିରେ ତାଳପତ୍ର ପାଞ୍ଜି ପରିପୂର୍ଣ୍ଣ । ସେଥିରେ ଉଇଲାଗି ହୁଙ୍କାପାଲଟିଗଲାଣି ।

ଧାଇମା' ଚଞ୍ଚଳ ମୁହଁଫେରାଇ ଚାଲିଗଲେ । ସବୁଆଡ଼େ ଏକ ରାହା । ଉଆସ ଭିତରେ ପରିଜନ ପ୍ରସ୍ତରେ ବୁଢ଼ୀ, ଯୁବତୀ, ଟୋକୀ, ଦଶବାର ବୋଡ଼ି ମାଇକିନିଆ ଜମା । ଥୋକେ ତିନି ପୁରୁଷର ପୋଇଲୀ—ଥୋକେ ଭଲ ଭଲ ଘରର ଆଶ୍ରୟହୀନା ବୋହୂଝିଅ । ଏଇ ପରିଜନ ପ୍ରସ୍ତରୁ ଦିନରାତି ବଜରବଜର ଶବ୍ଦ ଉଠୁଥାଏ । ହେଲେ ସା'ନ୍ତଙ୍କ ବିୟୋଗଦିନରୁ ଏଠାରେ ସ୍ୱର ଶବ୍ଦ ନାହିଁ । ପଡ଼ିଦାତାଙ୍କ ଦୁର୍ଯୋଗ—ସରସ୍ୱତୀ ଦେଈଙ୍କ ଆକୁଳତା, ସବୁ ବିପଦ ଯେମନ୍ତ ଏକାବେଳକେ ଉପସ୍ଥିତ—ପାଟିକରିବେ କ'ଣ, ପେଟରେ ଦାନା ପଶିବାକୁ ନାହିଁ । ଶୁଖି ଶୁଖି ଆପଣା ଟୁଙ୍ଗୀଟିମାନଙ୍କରେ ଦରମଲା ହୋଇ ପଡ଼ିଗଲେଣି ।

ଆଗେ ସା'ନ୍ତଙ୍କ ଉଆସରେ ଭଲ ବନ୍ଦୋବସ୍ତ ଥିଲା । ସଂକ୍ରାନ୍ତି ବାସିଦିନ ଧାନଘରିଆ ଜଣଜଣକେ ଧାନ ମାପିଦେଇ ଯାଉଥିଲା । ତେଲ ହଳଦୀ ଖର୍ଚ୍ଚାବୋଲି ମାସକୁ ମାସ ନଗଦ କିଛି କିଛି ପାଉଥିଲେ—ତିନିମାସକୁ ତିନିମାସ ନୂଆଲୁଗା ପାଇବାର ବନ୍ଦୋବସ୍ତ ଥିଲା । ଏବେ ପରିଜନମାନଙ୍କର ହାଲ ବୁଝିବାକୁ କେହି ନାହିଁ । ସମସ୍ତଙ୍କର ପିନ୍ଧାଲୁଗା ପାଞ୍ଚ ଦଶ ସିଆଁ । ଅଧାଅଧି ଦିନ ଉପାସ । ଚମ ଧୁଡୁଧୁଡୁ—ଛାତିର ହାଡ଼ ଗଣିହୋଇଯାଉଛି ।

ଦିନେ ଉପରଓଳିଆ ବୁଢ଼ୀ ଭଳିଆ କେତେଜଣ ମାଇକିନିଆ ସମସ୍ତଙ୍କୁ ଭାଗବତ ଗାଦି ଆଗରେ ଜମା କରାଇ କହିଲେ, ''ଯେବେ ଭାଗବତ ଗାଦି ଅନାଇବେ, ମଣିମାଙ୍କୁ ଦାଣ୍ଡ ଚଲାଇବେ, ତେବେ ଆମର କଷ୍ଟ ମେଣ୍ଟିଯିବ । ନୋହିଲେ ଆସ ସମସ୍ତେ ଏକାଘରେ ପଡ଼ିରହିବା—ଏ ବଂଶରେ କାଳି ଲଗାଇବା ନାହିଁ—ଉଆସରୁ ଗୋଡ଼ କାଢ଼ିବା ନାହିଁ । ସମସ୍ତେ ମଣିମାଙ୍କପାଇଁ ଠାକୁରଙ୍କ ନିକଟରେ ଜଣାଣ କର । ଟିକାୟତବାବୁ ଆଉ ଛୋଟବାବୁଙ୍କର ମଙ୍ଗଳ ହେଉ । ସମସ୍ତେ ଭାଗବତ ଗୋସାଇଁଙ୍କ ଗାଦିକୁ ଅନାଇ ନିୟମ କର ।'' ସମସ୍ତେ କାନ୍ଦି କାନ୍ଦି ନିୟମ କଲେ ।

ଆଜି ସକାଳେ ଧାଇମା' ମଝି ଦୁଆର ଫିଟାଇ ପରିଜନ ଖଞ୍ଜାକୁ ଗଲେ । ଯିମିତି ତାଙ୍କ ଉପରେ ନଜର ପଡ଼ିଛି, ବୁଢ଼ୀଠୁଁ ପିଲାଯାଏ ଧାଇଁଲେ । ଭୋ ଭୋ କରି ସମସ୍ତେ ଡକାପାରୁଛନ୍ତି । ଧାଇମା' ସେମାନଙ୍କର ଦେହର ଅବସ୍ଥା ଦେଖି ପିତୁଳିଟି ପରି

ଛିଡ଼ାହୋଇଛନ୍ତି । ଆଖିରୁ ଲୁହଧାରା ବହିଯାଉଛି । ଧାଇମା'ଙ୍କ ଆଖିରେ ଆଗେ ଜଳ ଦେଖାଯାଉନଥିଲା, ଦିନେ ଦିନେ କିଛି କଥାରେ ଆଖିରୁ ଲୋତକ ବହିଯାଏ—ହେଲେ ତାଙ୍କୁ ତକାପାରି କାନ୍ଦିବାର କେହି କେବେ ଦେଖିନାହାଁନ୍ତି । ରୂପ ଆଉ ଭେକ ଦେଖି ସମସ୍ତଙ୍କର ଚଳାଚଳର ହାଲ ବୁଝିପାରିଲେଣି । ଗନ୍ତାଘରିଆଣୀ ଆଖିଠାରି ସମସ୍ତଙ୍କୁ ମନାକରିଦେଲେ, କାହାରି କାହାରି କାନରେ ତୁନି ତୁନି କହିଲେ—କିଛି କହନାଇଁ ।

## ସାଧୁସାହୁ ମହାଜନ

ଧାଇମା' ସରସ୍ୱତୀ ଦେଇ ପରିଜନ ଖଞ୍ଜାରୁ ବାହାରିଆସି ଗନ୍ତାଘର କବାଟଟି ଆଉଜାଇ ଘଡ଼ିଏ ଯାଏ ଗୁମ୍‌ମାରି ବସିଲେ । ଘଡ଼ିକ ବାଦେ ଆପେ ଆପେ ସମ୍ଭାଳିହେଲେ । ହାତ ସିନ୍ଦୁକ ଆଡ଼କୁ ଚାହିଁଲେ, ସେଟା ତୁଚ୍ଛା ପଡ଼ିଛି । ମନ ମଧ୍ୟରେ ଭାବିଲେ—ଏଥିରେ ଯେତେ ଟଙ୍କା ଥିଲା ଚାରି ଛ'ଦିନେ କଟକରୁ ପଠାଇ ଦେବାକୁ କହି ନଟ ତ ଘେନିଗଲା, ଆଜିଯାଏଁ ଦେଲାନାହିଁ । ଆଉ କ'ଣ ସେ ଦେବ ? ଯେତେଥର ତାକୁ ଲେଖିଲି, ତା'ର ସେ ଗୋଟାଏ ଉତ୍ତର—''ସା'ନ୍ତଙ୍କ ନିଜ ଦେଣା ଶୁଝିନାହିଁ, ପ୍ରଜାମାନେ ମେଳିକରି ଟଙ୍କା ଦେଉନାହାନ୍ତି ।'' ହା ରେ ଦଇବ ! ଏ ଘରେ ପୁଣି ଦେଣା ? ଏଣେ ଦେଖୁଁଦେଖୁଁ ଯେ ପରିଜନଗୁଡ଼ାକ ମଲେ ଆସି—ଏ ଅଧର୍ମର ଭାଗୀ ହେବ କିଏ ? କି ଦୁର୍ବୁଦ୍ଧି ଘୋଟିଲା, ନଟ କଥାରେ କିଆଁ ଭୁଲିଗଲି ?

ସେ ବେକ ଅଣ୍ଡାଳିଲେ, ପିଟା ସୁନାର ଗୋଟିଏ ମାଳି ଥିଲା, ବାହାରକରି ଡାହାଣ ହାତରେ ଟେକିଧରି ଦଣ୍ଡେ ଅନାଇଲେ । ଚାନ୍ଦମଣିର ଜନ୍ମ ସମୟରେ ଅପା ଖୁସିହୋଇ ଦେଇଥିଲେ । ତାଙ୍କ ଅଜାଣତରେ ଆଖିରୁ କେତେ ଟୋପା ପାଣି ଖସିପଡ଼ିଲା । ସେହି ହାରଟା ତଳେ ଥୋଇ ଟିକିଏ କାଗଜରେ କ'ଣ ଚାରିଧାଡ଼ି ଲେଖି ସେହି ସୁନାମାଳି ଆଉ ଭାଷାଖଣ୍ଡ ସାଧୁ ସାହୁ ମହାଜନ ପାଖକୁ ପଠାଇଦେଲେ ।

ସାଧୁ ସାହୁ ନରିପୁର କିଲ୍ଲା ମଧ୍ୟରେ ଗୋଟିଏ ଟାଣୁଆ ତେଲି ମହାଜନ । ନଗଦଟଙ୍କା ଆଉ ଧାନର କାରବାର । ଲୋକେ କହନ୍ତି, ସାଧୁ ସାହୁ ରାତିଅଧରେ ଲକ୍ଷେ ଟଙ୍କା ଗଣିଦେବା ଲୋକ । ଚଉଦଘଡ଼ିଆ ବେଳ—ସାହୁଏ ତାଙ୍କ ବେଉସା ଘର ପିଣ୍ଡାରେ ବସି ଆଖିବୁଜି କୃଷ୍ଣ କୃଷ୍ଣ ଜପ କରୁଛନ୍ତି । ଉଆସ ଭିତରେ ପଢ଼ିଆରୀ ମଦନ ମହାକୁଡ଼ ପହଞ୍ଚିଲା । 'ଧାଇମା' ଏହି ସୁନାମାଳି ଆଉ ଭାଷା ଦେଇଛନ୍ତି' କହି ସାହୁଙ୍କ ହାତକୁ ବଢ଼ାଇଦେଲା । ସେ ପଢ଼ି ଜାଣନ୍ତି ନାହିଁ—କରଣ ପାଞ୍ଜିଆ ପଢ଼ି ଶୁଣାଇଦେଲା—

''ସୁନାମାଳିଟା ରଖି ତିନିଶ ଟଙ୍କା ଆଉ ତିରିଶ ଭରଣ ଧାନ କରଜ ଦେବ ।'' ସାହୁଏ ଶୁଣି କାନ୍ଦିପକାଇଲା ପରି ହୋଇ କହିଲେ, ''କୃଷ୍ଣ କୃଷ୍ଣ ! ଧାଇମା'ଙ୍କୁ ମୋର ଲକ୍ଷଲକ୍ଷ ଜୁହାର ଦେବ । ଏହି ମାଳି ଆଉ ତିନିଶ ଟଙ୍କା ନେଇଯା—ଧାନଘରିଆ ଅଇଲେ ପଛକେ ଧାନ ମପାଇ ପଠାଇଦେବି । ଧାଇମା'ଙ୍କୁ କହିବ, ମୁଁ କଣ ଏଡ଼େ ନିମକହାରାମ ହେଲି ଯେ ମାଳି ରଖି ଟଙ୍କା ଦେବି ? ଯେତେବେଳେ ଯେତେ ଲୋଡ଼ା ଘେନିଯାଉଥିବ ।'' ହେ ପାଠୁଆ ନଟବର ଦାସେ ! ଥରେ ଆସି ମୂର୍ଖ ସାଧୁ ସାହୁର ବେଭାରଟା ଦେଖିଯାଅ ହେଲେ !

## ନରୁବାବୁଙ୍କ କଟକ ଯାତ୍ରା

ସାମନ୍ତ ପ୍ରତାପଉଦିତ ମଲ୍ଲ ଉତ୍ତରରାୟ ନିଜ ଗଡ଼ରେ ଯେଉଁ ମାଇନର ସ୍କୁଲ ବସାଇଥିଲେ, କେବଳ ଟିକାଏତବାବୁଙ୍କ ଲାଗି ତାହା ଆଜିଯାଏଁ ଚଳୁଛି । ତାଙ୍କ ଦେଖାଦେଖି ଆଉ ତାଙ୍କ ମନ ବହଲାଇବାପାଇଁ ଲୋକମାନେ ଆପଣା ଆପଣା ପିଲାଙ୍କୁ ସ୍କୁଲକୁ ପଠାଉଥାନ୍ତି । ମାଷ୍ଟର ଦରମା ଆଉ ସବୁ ଖର୍ଚ୍ଚ ସା'ନ୍ତଙ୍କ ତହବିଲରୁ ହୁଏ । ସା'ନ୍ତଙ୍କ ବିୟୋଗ ଦିନରୁ ତାହା ବନ୍ଦ । ବର୍ତ୍ତମାନ ମଣିମାଙ୍କ ଖଞ୍ଜା ମୌଜାରୁ ଅଧେ ଦିଆଯାଏ, ବାକି ଅଧେ ପିଲାଙ୍କ ଦରମାରୁ ଉଠେ ।

ଦୁଇମାସ ତଳେ ଟିକାଏତବାବୁ ମାଇନର ପରୀକ୍ଷା ଦେଇଥିଲେ । ସେ ପ୍ରଥମ ଶ୍ରେଣୀରେ ପାସ୍ କରିଥିବାର ଇନସ୍‌ପେକ୍ଟର ସାହେବଙ୍କ ଅଫିସରୁ ଚିଠି ଆସିଲା—ମାସକୁ ଚାରିଟଙ୍କା କରି ଜଳପାନପାଇ କଟକ ବଡ଼ ସ୍କୁଲରେ ପଢ଼ିବେ । ନରୁର ପାସ୍ ଖବର ପାଇ ମଣିମା ଘଡ଼ିଏ କାଳ ଗୁମ୍‌ହୋଇ ବସିଲେ—ଦୁଇ ଆଖି କୋଣରେ ଦୁଇ ଟୋପା ପାଣି ଢଳଢଳ ହେଲା ।

ନରୁବାବୁ ଧରିବସିଲେଣି ଇଂରେଜୀ ପଢ଼ିବାକୁ କଟକ ଯିବେ । ଏହାଶୁଣି ଉଆସରେ ଚଡ଼କଟାଏ ଯେମନ୍ତ ପଡ଼ିଗଲା । ଜେଜୀମା କହିଲେ, ''କଟକ କ'ଣରେ ନରୁ—ଇଂରେଜୀ ପାଠ ପଢ଼ିବୁ, ଏଇ ଉଆସରେ ବସି ପଢ଼; ଯେତେ ଟଙ୍କା ଲାଗୁ ମୁଁ ଦେବି । କଟକରୁ ଭଲ ଭଲ ମାଷ୍ଟର ଆଣିଦେବି—ତୁ କଟକ ଯା'ନା ।'' ନରିବାବୁଙ୍କ ଏକାରା—ସେଇ ହଟ । ଧାଇମା' ଚାନ୍ଦମଣିଙ୍କୁ କିଛି କହିନାହାନ୍ତି, ସେ ଆପେ ଆପେ କହିଲେ, ''ଧାଇମା, ନରୁ କହୁଛି ତ କଟକ ଯାଉ । ୟାଙ୍କ ବଂଶରେ ସେଇ ଗୋଟାଏ ଜିଦ୍, ଯେଉଁଟା ଧରିବେ କରିବେ ।'' ସେ ଆଉ କ'ଣ କହିବାକୁ ଯାଉଥିଲେ, ପାଟି ଫିଟିଲା ନାହିଁ । ଧାଇମା' କ'ଣ ବୁଝି, ଚଞ୍ଚଳ ଅନ୍ୟ ଆଡକୁ ଚାଲିଗଲେ ।

ପାଟ ଜ୍ୟୋତିଷ ଆସି ଦିନଟାଏ ଧରିଦେଇଗଲେ । ଯୁଗଳକିଶୋରଙ୍କ ମନ୍ଦିରରେ ତାଙ୍କର ମଙ୍ଗଳ ମନାସୀ ପୂଜାପାଠ ହେଲା ।

ଧାଈମା' ବୁଢ଼ା ଛାମୁକରଣଙ୍କୁ ଡକାଇଲେ । ପାଞ୍ଜିଆ କହିଲେ, ''ଦୁଇଟା ଜାଗା ଅଛି-ହେଲେ ମାମୁଁ ବସାରେ ରହିଲେ ବଡ଼ ଗୋଳମାଳ, ସେଠାରେ ରହିବାର ସୁବିଧା ହେବନାହିଁ । ପାଞ୍ଜିଆ ସାଫ୍ ଫିଟାଇ କହିଲେନାହିଁ ଯେ ମାମୁଁ ବସାରେ ରଖାଇବାକୁ ତାଙ୍କର ବିଶ୍ୱାସ ଖଟୁ ନାହିଁ । ଧାଈମା' ତାଙ୍କ ମନକଥା ବୁଝିଲେ—କହିଲେ, ''ମଉସା ବସାରେ ରହିଲେ ନଟ ଖର୍ଚ୍ଚ ଦେବ ନାହିଁ, ଏଣେ ମଉସା ବି ଖର୍ଚ୍ଚ ମାଗିବେ ନାହିଁ । ଯେତେହେଲେ ତ ବନ୍ଧୁ—ଖର୍ଚ୍ଚ ନ ଦେଇ ତାଙ୍କ ଘରେ ରଖାଇବାଟା ମୁଁ ପସନ୍ଦ କରୁନାହିଁ । ନଟ ଯେପରି ମଣିଷ, ନରୁ ମଉସାଘରେ ରହିଲେ ଜାଣିଶୁଣି ଅନିଷ୍ଟ କରିବ । କରୁଣା ବାରିକ ତ ସାଙ୍ଗରେ ଯାଉଛି—ସେପରି ଯେବେ ଅସୁବିଧା ଦେଖିବ ମଉସା ବସାକୁ ଉଠିଯିବ । ଏହା ଶୁଣି ପାଞ୍ଜିଆ ଆଉ କିଛି ନକହି ତୁନିହେଲେ ।

ସବାରିରେ ଚାରିଯୋଡ଼ା କାନ୍ଧିଆ ଆପଟ ଲାଗିଚନ୍ତି । ଆଗପଛରେ ଦୁଇଟା ପାଇକ,ଚାରିଟା ଭାର । ଡେବିରି ହାତରେ ଗୋଟାଏ ପିତଳ ତେଲଦାନି ଆଉ ମଶାଲ, ଖାଇବାହାତରେ ଖଣ୍ଡେ ବାଡ଼ି,ପିଠିରେ ଗୋଟାଏ ସାନ ବୋକଚା ପକାଇ କରୁଣା ବାରିକ ଧାଇଁଛି । ସଞ୍ଜଦୀପ ଲାଗେଲାଗେ ସବାରି ବାଖରାବାଦ ନାଜରଙ୍କ ବସାରେ ଭିଡ଼ିଲା । ନାଜରବାବୁ ମାଳା ଝୁଲିଟାଏ ଧରି ବାହାରକୁ ବାହାରୁଥିଲେ । ସେ ସବାରି କବାଟଟା ଭିଡ଼ିଦେଇ ଆସ ବୋଲି କହି ନରୁବାବୁଙ୍କୁ ଓହ୍ଲାଇନେଲେ । ବାରିକ ଶେଯଟା କାଢ଼ିନେଇ କୋଠରି ମେଲାରେ ପକାଇଦେଲା ।

ନାଜରବାବୁ ନରୁବାବୁଙ୍କୁ ବସାଇ ଭିତରେ ପ୍ରସ୍ତୁକୁ ଗଲେ । ସା'ନ୍ତାଣୀ କହିଲେ, ''ଏ ପୁଣି କ'ଣ ଗୋଟାଏ ପ୍ରେମ ? ସେଥିଲାଗି ଗାଁରୁ କେହି ଆସିଲେ ମୁଁ ତାଙ୍କୁ ବସିବାକୁ ଠା'ଦିଏନାହିଁ । ସେମାନଙ୍କର କ'ଣ ଉଣା ଜଞ୍ଜାଳ ?''

ନାଜରବାବୁ କହିଲେ, ''ତୁନିପଡ଼ ତୁନିପଡ଼ । ଭଲହେଲା । ଗଡ଼ ଭିତରୁ ଢେର୍ ଢେର୍ ପିଠା, ଖଜା,ଆଉ ଆଉ ଭଲ ଭଲ ଜିନିଷ ଆସିବ । ପିଲାଟା କେତେ ଖାଇବ ! ଆଉ ତା ପିଛା ମାସକୁ ଦଶଟଙ୍କା ଖର୍ଚ୍ଚ କରି ପଚିଶଟଙ୍କା ଲେଖିବା ।'' ନାଜରବାବୁ ନରୁବାବୁଙ୍କୁ ଆଣି ମାଇଁ ସାଙ୍ଗରେ ଭେଟକରାଇଦେଲେ । ନରୁବାବୁ ଭୂଇଁରେ ମୁଣ୍ଡ ଲଗାଇ ଦଣ୍ଡବତକରି ଛିଡ଼ାହୋଇଥା'ନ୍ତି । ମାଇଁ ବକବକ କରି ମୁହଁକୁ ଅନାଇଛନ୍ତି,ପଦେ ପାଟି ଫିଟାଇବାକୁ ନାହିଁ । ନାଜରବାବୁ ଟଞ୍ଚଳ ନରୁବାବୁଙ୍କ ହାତଧରି ବୈଠକଖାନାକୁ ଘେନିଗଲେ ।

ବୈଠକଖାନାର ଏକ ପାଖରେ ଗୋଟାଏ ଲମ୍ବ ଗମ୍ଭୀରି, ପୁରୁଣା କାଳର ତିଆରି, ଦୁଆରଟା ନୁଆଣ, ମୁଣ୍ଡ ନୁଆଁଇ ଯିବାକୁ ହୁଏ । ଉତ୍ତରରେ ହାତପହୁଞ୍ଚା ଉପରକୁ ଗୋଟିଏ ସାନ ଝଲାକବାଟି । କବାଟ ବନ୍ଦକରିଦେଲେ ଦିନବେଳେ ବି ଘରଟା ଅନ୍ଧାର ହୋଇଯାଏ । ପବନ ପଶିବାର ବାଟ ନଥାଏ । ନରୁବାବୁଙ୍କ ଜିନିଷସବୁ ସେଇ ଘରେ ରହିଲା । ଗୋଡ଼ ଟଳଟଳିଆ ପୁରୁଣା ଖଟ ଖଣ୍ଡେ ପଡ଼ିଛି, ସେଥିରେ ବାବୁ ଶୋଇବେ । ଏସବୁ ଦେଖି କରୁଣାଟା ନାକ ସିଟକାଉଛି, ଘରଟା ମନକୁ ମାନୁନାହିଁ ପରା ?

ରାତି ଅନୁମାନ ଛ' ଘଡ଼ି ସରିକି ନାଜରବାବୁଙ୍କ ବସାରେ ସମସ୍ତେ ଖିଆପିଆ କରି ଶୋଇଗଲେଣି । ଆପଟ ପାଇକଗୁଡ଼ାକ ସମସ୍ତେ ଶୋଇପଡ଼ିଥିଲେ । ସେମାନଙ୍କ କଥା କେହି ବୁଝିବାକୁ ନାହିଁ । ଢେଙ୍କୀମା' ଗୋଟାଏ ବଟୁଆରେ କିଛି ଟଙ୍କା ଆଉ ରେଜିକି ପେଟରାରେ ଥୋଇଦେଇଥିଲେ । କରୁଣା ସେଥିରୁ ଯୋଡ଼ାଏ ଟଙ୍କା କାଢ଼ି ପାଇକମାନଙ୍କ ହାତରେ ଦେଲା । ବଜାର ବନ୍ଦହୋଇନାହିଁ, ଚୁଡ଼ା ଗୁଡ଼ କିଣିଆଣି ପେଟେ ପେଟେ ଖାଇ ଶୋଇପଡ଼ିଲେ । ପାହାନ୍ତ ବେଳକୁ ଦେଖାଗଲା—କେହି କୁଆଡ଼େ ନାହିଁ ।

## ଜଏଣ୍ଟ ମାଜିଷ୍ଟ୍ରେଟ୍ ମିଷ୍ଟର କୋନସ୍ ସାହେବ

କୋନସ୍ କଟକ ଜିଲ୍ଲାର ଜଏଣ୍ଟ ମାଜିଷ୍ଟ୍ରେଟ୍ । ମଇମାସ—ଦି' ପହରିଆ ବେଳ—ସାହେବ କଚେରି କରୁଛନ୍ତି । ହଜୁରରୁ ହୁକୁମ ହେଲା—''ଜୋର୍‌ସେ ପଙ୍ଖା ଖେଁଚୋ ।'' ଖୋଦାବକ୍‌ସ ଚପରାସୀ ହୁକୁମଟା ଭଲକରି ତାମିଲ କରିବାପାଇଁ ଧାଇଁଗଲା । ଗଙ୍ଗା ବେହେରାକୁ ଧକାଟାଏ ମାରି ଆପେ ପଙ୍ଖା-ରସି ଧରି କାମଟା ଶିଖାଇବସିଲା । ଦୁଇଥର ଭିଡ଼ିଦେଇଛି ତ ପଟ୍‌କରି ରସିଟା ଛିଡ଼ିଗଲା । ସାହେବ ଭାରି ଖପ୍ପା ହୋଇଗଲେ । ପେସ୍କାରକୁ ଅନାଇ କହିଲେ, ''କିସ୍‌ବାସ୍ତେ ରସି ଟୁଟା ?'' ପେସ୍କାର ଚଞ୍ଚଳ କହିପକାଇଲେ, ''ହଜୁର, ରସି ପୁରାନା ।''

ସାହେବ—''ନନ୍‌ସେନ୍‌ସ...ବଟ୍ କିସବାସ୍ତେ ପୁରାନା ?''

ପେସ୍କାର—ହଜୁର, ନୟା ରସି ଦେନା ନାଜର୍‌କା କାମ୍—ହର ମଇନାମେ ନୟା ହୋତା ହେ—ସବ୍ ମିସଲମେ ହୋଗେୟା, ଇହାଁବି ହୋଯାଏଗା ।''

ସାହେବ—''ବୋଲାଓ ରାସ୍କେଲ ନାଜରକୋ ।''

କିନ୍ତୁ ନାଜରବାବୁ ତେତେବେଳେ କିଲଟର ସାହେବଙ୍କ କୋଠିରେ ଅଛନ୍ତି । ଚପରାସୀ ଫେରିଆସି ଖବର ହେଲା । ହୋସିଆରି ଖୋଦାବକ୍‌ସ ଛିଣ୍ଡା ଦଉଡ଼ିକୁ

ଗଇଣ୍ଡାଗଇଣ୍ଡି କରି କାମ ଚଳାଇଦେଲାଣି । ନାଜରଙ୍କ ଉପରେ ସାହେବଙ୍କ ରାଗ ଦେଖି ପେସ୍କାରବାବୁ ସଟପଟି ଗଲେଣି । ଦୁଇଜଣଙ୍କ ଭିତରେ ପଡ଼େନା ସତ, ହେଲେ ଜାତିଭାଇ, ସାଙ୍ଗ ଚାକିରିଆ । ସେ ହିଂସାରେ କହିନାହାନ୍ତି, ସାହେବଙ୍କ ରାଗ ଦେଖି ଚଞ୍ଚଳ ସତକଥାଟା କହିପକାଇଲେ ।

ଖୋଦାବକ୍ସ ଭାଇ ରହିମ ବକ୍ସ ନାଜରଖାନାର ପିଆଦା । ନାନାକାରଣରୁ ନାଜରବାବୁ ଉପରେ ତା'ର ରାଗ । ତହିଁଆରଦିନ କଲମକଟା ଛୁରିଟାଏ ଆଣି ପଙ୍ଖା-ରସିଟା କ'ଣ ସଜିଲ କରିଦେଲା । ହଜୁର ଆସି ମିସଲରେ ବସିଛନ୍ତି, ପୁଣି ରସିର ଗତ କାଲିର ହାଲ ଉପସ୍ଥିତ । ନାଜରଙ୍କୁ ଧରିଆଣିବାପାଇଁ ପିଆଦା ଧାଇଁଲା, କିନ୍ତୁ ସେ ଆସିନାହାନ୍ତି । ସକାଳେ କିଲଟର ସାହେବ କୋଠିକୁ ଯିବାକୁ ପଡ଼େ, ବଳେ କଚେରିକୁ ଆସିବା ବେଳଟା ମଠହୋଇଯାଏ । ସାହେବ ଠିକ୍‌କରିନେଲେ, ଏଇଟା ନାଜରର ଭୁଲ୍ । ଆପଣା ବାକ୍‌ସରୁ ଟଙ୍କାଟାଏ କାଢ଼ି ପେସ୍କାରବାବୁ ଉପରକୁ ଫୋପାଡ଼ିଦେଇ ତେଜରେ ହୁକୁମ କଲେ, ''ଜଲ୍‌ଦି ରସି ଲଗାଓ ।'' ଖୋଦାବକ୍ସ ପାଞ୍ଚମିନିଟ୍ ଭିତରେ ରସିକାମ ଠିକ୍ କରିଦେଲା । ନାଜରର ଗଫଲତି ଆଉ ଖୋଦାବକ୍ସର ଚାଲାକି ଏକାବେଳକେ ହଜୁରରେ ପ୍ରକାଶପାଇଗଲା । ଅମଲାମାନେ ଅବଶ୍ୟ କଥାର ମର୍ମ ବୁଝିଗଲେ ।

## ଶାଶୁ ଓ ଶାଳକଙ୍କ ଆଗମନ

ଆଜି ରବିବାର, କଚେରୀ ବନ୍ଦ । ଦପ୍ତରରେ ଆଠଗୋଟା ଆଲମାରୀ ଲୋଡ଼ା, ଚାରିଜଣ ବଢ଼େଇ ହାଜର । ଦାମ୍ ତ ସରକାରୀ ବନ୍ଧା । କେବଳ ନାଜରବାବୁଙ୍କ କମିଶନ ନେଇ ତିନି ଘଣ୍ଟା କାଳ କଷାକଷି । ଶେଷରେ ବକ୍‌ସିବଜାରର ମଦନ ମହାରଣା ସହିତ କମିଶନି ତୁଟିଲା । ସେ ବଇନା ଟଙ୍କା ନେଇ ରସିଦ୍ ଦେଇ ଚାଲିଗଲା । ଏ ସବୁ କାମ ସାରି ବସାକୁ ବାହୁଡ଼ିବାକୁ ସବୁଦିନ ପରି ସଞ୍ଜ ।

ନାଜରବାବୁ ଜଳଖିଆ ସାରି ଭିତର ଅଗଣାରେ ବସିଛନ୍ତି । ନାଜରାଣୀ ତଳେ ବସି ପାନଖିଲ ଭାଙ୍ଗିବାରେ ବ୍ୟସ୍ତ । ଚିତ୍ରକଳା ଗୁଡ଼ାଖୁ ସାଜି ଆଣିଲା—ବାବୁଙ୍କ ହାତକୁ ବଢ଼ାଇଦେଲା । କିଛିକ୍ଷଣ ଉତ୍ତାରେ ନାଜରବାବୁ ମାଳଝୁଲିଟା ତଲବକଲେ । ଏଇଟା ବାହାରକୁ ବାହାରିବାର ପୂର୍ବ ସଙ୍କେତ ।

ନାଜରାଣୀ—''ତୁମେ ତ ବାହାରିଲ, ଦିନଓଳିଟା ସଟାବଟାରେ ଚଳିଗଲା, ରାତି ଓଳିଟା କ'ଣ କରାଯିବ ?''

ନାଜର—"ଆଚ୍ଛା, ପିଆଦା ପଠାଇ ରୋଷେୟା ବ୍ରାହ୍ମଣ ଖୋଜାଇବି । ରାମ ପାଣ୍ଡେ ପିଆଦା ରାତି ଓଳିଟା ଚଳାଇନେବ—କାଲିକା କଥା ତ ଅଛି ।"

ନାଜରାଣୀ—"ଦେଖ, ବ୍ରାହ୍ମଣଗୁଡ଼ାକୁ ଆଉ ପାରିବିନାହିଁ—ତିନିଓଳି ତିନି ପେଟ ଖାଇବେ—ତାହା ଉପରେ ଚୋରି । ପୁଣି ମାସ ପୂରିଛିକି ନାହିଁ ଦିଅ ଦରମା । ଦରମା ଦଶ ପନ୍ଦର ଦିନ ମଠ ହେଲେ ପଳାଇଯିବେ । ମୁଁ ବି ସେମାନଙ୍କ ଗୁଣ ଜାଣି ଦରମା ଦିଏନାହିଁ ।"

ଚିତ୍ରା କହିଲା—"ହଁ-ହଁ, ସତକଥା; ବ୍ରାହ୍ମଣଗୁଡ଼ାକ ଢେର୍ ଖାଆନ୍ତି । ସବୁଗୁଡ଼ାକ ଚୋର । ସା'ନ୍ତାଣୀ ଆଚ୍ଛା କରନ୍ତି—ଲୁହା ଜାଣି ପାଣି ଦିଅନ୍ତି । ଖାଇଲ ପିଇଲ, ଫେର୍ ଦରମା କ'ଣରେ ?"

ନାଜରାଣୀ—ମୁଁ କହୁଥିଲି, ବୋଉକୁ ଆଣିଲେ ଭଲ ହୁଅନ୍ତା ନାହିଁ ?

ଚିତ୍ରା—ଖୁବ୍ ଭଲ ହେବ, ଆଚ୍ଛା ହେବ ।

ନାଜରାଣୀ—ବୋଉ ସିନା ମୁଠାଏ ଖାଇବ, ଖଣ୍ଡେ ପିନ୍ଧିବ, ଦରମା ତ ଦେବାକୁ ପଡ଼ିବ ନାହିଁ ।

ଚିତ୍ରା—ମା' ବୁଢ଼ୀଟା ଖାଇବେ କ'ଣ ମ ? ମୁଠାଏ ଖାଇଦେଲେ ତ ଗଲା ଚାରିଦିନ ବାହାରି । ଆଉ ଲୁଗା କ'ଣ, ଖଣ୍ଡେ ଲୁଗା ହେଲେ ତ ପାଞ୍ଚବରଷ—କଥା ଛିଡ଼ିଲା ।

ନାଜରବାବୁ ଏବେ ମନରେ ଠିକ୍‌କରିନେଲେ—ହେଉ ତେବେ ଆସନ୍ତୁ । ଆଜି ଭାତ ନାହିଁ, କାଲି ଲୁଗାନାହିଁ, ସବୁ ତ ଚଳେଇବାକୁ ପଡୁଛି । ହେଉ ଆସନ୍ତୁ, ଏକା ଖରଚରେ ଯିବ । ହେଲେ ରାଘବାଟା ନ ଆସୁ । ସେ କହିଲେ, "ହଉ ବୋଉ ଆସନ୍ତୁ, ହେଲେ ରାଘବ ମାହାଳିଆଟା କଁ୍ୟା ଆସିବ ?"

ଚିତ୍ରା—ହଁ-ହଁ, ମା ଅବଶ୍ୟ ଆସିବେ । ରାଘୋ ଭାଇସା'ନ୍ତ ଆସିବେ ନାହିଁ । ସେଠି ଘର ସମ୍ଭାଳିବ କିଏ ? ଚୋର ଟସ୍କରସବୁ ଘେନି ପଳାଇବେ । ପୀଢ଼ାରେ ହନୁ ଡେଇଁ ଚାଳ ଭାଙ୍ଗିପକାଇବେ, ଘଉଡ଼ିବ କିଏ ?

ନାଜରାଣୀ—ନାହିଁ ନାହିଁ, ତାକୁ ଭାତ ମୁଠାଏ ରାନ୍ଧି ଦେବ କିଏ ?

ଚିତ୍ରା—ହଁ,ହଁ, ଭାଇସା'ନ୍ତ କିମିତି ନଆସିବେ ? ଏକୁଟିଆ ଭାରି ଡରିବେ ।

ନାଜର ବିଚାରକଲେ—ନଆଣିଲେ ତ ନୁହେଁ— କିଛି ଗୋଟାଏ କାମରେ ଲଗାଇଦେବେ । ସେ କହିଲେ—"ହେଉ ତେବେ ଆସନ୍ତୁ, ଦୁହେଁ ଆସନ୍ତୁ ।"

ଚିତ୍ରା—ସା'ନ୍ତ, ମୁଁ କହୁଛି ଚଞ୍ଚଳ ଲୋକ ପଠାନ୍ତୁ—ଆଜି ରାତି ରାତି ଧାଉଡ଼ିଆ ଯା'ନ୍ତୁ ।

ନାଇରବାବୁ ଟିକିଏ ହସି ତୁନିହେଲେ । ଆସନ୍ତା ବୁଧବାର ସେମାନଙ୍କୁ ଆଣିବା ସକାଶେ ଲୋକ ଯିବାର ସ୍ଥିର ହେଲା ।

ବୋଉକୁ ଅଣାଇବା କଥାବାର୍ତ୍ତାର ଚତୁର୍ଥ ଦିନ ସଞ୍ଜବେଳେ ଖଣ୍ଡିଏ ତାଳତାଟି-ଛପର ଶଗଡ଼ ନାଇରବାବୁଙ୍କ ବସା ଦୁଆର ଆଗରେ ଆସି ଛିଡ଼ାହେଲା । ଚିତ୍ରା ଦୀପଟିଏ ଧରି ଆଗେ ଆଗେ ଯାଉଥାଏ—ନାଜରାଣୀ ପଛେପଛେ ଚାଲୁଥା'ନ୍ତି । ଶଗଡ଼ ପାଖରେ ପହଞ୍ଚି ପରଦା କନା ଖଣ୍ଡ ଭିଡ଼ିଦେଲେ—''ଆ ବୋଉ ଆ'' କହି ବୁଢ଼ୀଟିର ହାତଧରି ଶଗଡ଼ ଭିତରୁ ଓହ୍ଲାଇନେଲେ । ସମସ୍ତେ ବାରନ୍ଦାଏ ବାରନ୍ଦାଏ ଭିତରକୁ ଗଲେ ।

ଆଣ୍ଠୁଲୁଚା ଲୁଗାଖଣ୍ଡେ ପିନ୍ଧା, ମୁଣ୍ଡରେ ଖଣ୍ଡିଏ ମଳିଆ ଗାମୁଛା ଗୁଡ଼ିଆ—ହାତରେ ଛାତିଏ ଲମ୍ବ ବାଉଁଶ ବାଡ଼ି ଖଣ୍ଡେ ଧରି ଗୋଟିଏ ଡେଙ୍ଗା ଭେଣ୍ଡିଆ ସେଇ ଅନ୍ଧାରରେ ଶଗଡ଼ଠୁ କିଛି ଦୂରରେ ଛିଡ଼ାହୋଇଥିଲା । ମାଇକିନିଆ ପଲ ଭିତରକୁ ପଶିଗଲା ପରେ ସେହି ଲୋକଟି କାନ୍ଧରେ ଟୋକେଇଟିଏ କାନ୍ଧେଇ ଘର ଭିତରକୁ ଚାଲିଲା ।

ଚିତ୍ରା ଆଲୁଅଟା ନେଇ ଚାଲିଗଲାଣି । ନୂଆ ଲୋକଟି ଦୁଆରବନ୍ଧ ଡେଇଁ ସଳଖେ ସଳଖେ ଚାଲିଛି । ମନରେ ଭାରି ଆନନ୍ଦ, ଏଇଟା ଅପା ଘର, କେଡ଼େ କୋଠାଘରଟାଏ । ଏଇ କୋଠାରେ ରହିବାକୁ ହେବ । ତଳ ବାଟକୁ ନଜର ନାହିଁ, ଉପରକୁ ଅନାଇ ଦେଖୁଛି ଆଉ ଚାଲୁଛି ।

ବାରନ୍ଦା ମଝିରେ ଅଗଣା । ବାରନ୍ଦାଠାରୁ ହାତେ ଗହୀର । ଲୋକଟି ଯେମିତି ଗୋଡ଼ ପକାଇଛି, ମୂଳକଟା ତାଳଗଛ ପରି ଏକାବେଳକେ ଦୁଲ୍‌କରି ପଡ଼ିଗଲା । ଠଣ-ଠଣ-ଠଣ-ଝଣ-ଝଣ-ଝଣ ଶବ୍ଦ କରି ଜିନିଷଗୁଡ଼ାକ ଅଗଣାଟାଯାକ ବୁଣିପଡ଼ିଲା । ଲୋକଟିର ତେତେବେଳର ଅବସ୍ଥା କହିଲେ ନସରେ । ଲାଜରେ ବେଶି ଭାଗରୁ ଡରରେ ପାଟିକରି କାନ୍ଦିପାରୁନାହିଁ ।

ଚିତ୍ରକଳା ଶବ୍ଦଟା ଭିତରୁ ଶୁଣିଲା—ଆହା ! ଭାଇସା'ନ୍ତ ପଡ଼ିଗଲେ ପରା ! ଦୀପଟା ଧରି ଧାଇଁଆସିଲା । ଦେଖିଲା ଜିନିଷଗୁଡ଼ାକ ଅଗଣାସାରା ବୁଣିପଡ଼ିଛି—ଲୋକଟା କାଳିଆ ଉଇ ହୁଙ୍କାଟାଏ ପରି ବସି ଦୁଇ ଆଣ୍ଠୁରେ ହାତ ବୁଲାଉଛି । ସେ ମନ ମଧ୍ୟରେ ଖୁବ୍ ଗୋଟାଏ ହସି କହିଲା—''ଏଇଟା ଅନ୍ଧ ନା କ'ଣ ?'' ତା'ପରେ ଭାଇସା'ନ୍ତଙ୍କ ହାତଧରି ଠିଆକରାଇଦେଲା । ଲଜ୍ଜାରେ, ଦୁଃଖରେ, ଦେହ ଯନ୍ତ୍ରଣାରେ ଭାଇସା'ନ୍ତ ଗୋଟାଝାଳରେ ଗାଧୋଇପଡ଼ିଲେଣି ।

ଚିତ୍ରା ହାତକୁ ଚଟ୍‌ଚଟ୍ ଲାଗିବାରୁ ଘୃଣାରେ ହାତଟା କାଢ଼ିନେଇ ଜିନିଷ ଗୁଡ଼ାକ ଗୋଟାଇବସିଲା । ଦୃଷ୍ଟାଟା ପରଖିଯାଉଥାଏ—ଜିନିଷଗୁଡ଼ାକ କ'ଣ । ଏଇଟା ତ ଲୁଗା ପୁଟୁଳା-ଖଣ୍ଡ ଦୁଇ ଲୁଗା ହେବ । ଏଇଟା ଚାଉଳ ପୁଡ଼ିଆ—ଅନ୍ଦାଜ ଦୁଇସେର ହେବ । ସାନ ପୁଡ଼ିଆଟା ବିରି କି ମୁଗ ଚିପିଚିପି ଠିକ୍ କରିପାରିଲା ନାହିଁ । ଓହୋ ! ଏ ସାନ ପୁଟୁଳାଟା ସୋରିଷ । ଚିତ୍ରା ମନ ମଧ୍ୟରେ ଖୁବ୍ ଗୋଟାଏ ହସି କହିଲା, ''ହୁଁ, ଘରକରଣା ସବୁ ଜିନିଷଗୁଡ଼ାକ ଧରି ବାହାରି ଆସିଲେ, କିଛି ଛାଡ଼ିଆସି ନାହାନ୍ତି ।'' ଗଡ଼ିଗଡ଼ି ପାଞ୍ଚହାତ ଦୂରରେ ନୋଟାଟା ପଡ଼ିଥିଲା—ସେଥିରେ ଝୁଣାର ଗୋବ ବସିଛି । ଭୂଇଁରେ ପଡ଼ି ଟୋଲା ହୋଇଗଲାଣି । ଏଇଟା କ'ଣ ? ତୋରାଣିପିଆ କଂସା ହେବ—କଂସା କ'ଣ ଏତେ ପାତଳ ହୁଏ ? ମଲା ଯା, ଏ ଖଣ୍ଡ ଯେ ଚାରିଖଣ୍ଡ ହୋଇ ଗଲାଣି ! ଚିତ୍ରକଳା ଜିନିଷଗୁଡ଼ାକ ପାଚିଆରେ ପୂରାଇ ଦୀପଟା ଧରି ଆଗେ ଆଗେ ଚାଲିଲା—ଭାଇସା'ନ୍ତ ପଛେ ପଛେ ଚାଲିଛନ୍ତି ।

ବାହାରେ ଏତେ କାଣ୍ଡ, ମା' ଝିଅଙ୍କୁ କିଛି ଜଣାପଡ଼ିନାହିଁ, କନ୍ଦାକଟାରେ ଲାଗିଛନ୍ତି । ବୋଉ ତ ଝିଅକୁ କୁଣ୍ଢାଇ କେତେ କ'ଣ ବାହୁନିଯାଉଛନ୍ତି—'ଆରେ ମୋ ବିସ୍କୀରେ ! ତୋ ଚାନ୍ଦମୁହଁ ନ ଦେଖି ମୁଁ ଅନ୍ଧୁଣୀ ହୋଇଯାଇଥିଲି...' ଏହିପରି ଢେର୍ ବେଳଯାଏଁ ବାହୁନିଲେ ।

ପାଠକ ମହାଶୟ ! ଗୋଟାଏ କଥା, ଏତେ ଦିନ ଉତାରେ ଜଣାପଡ଼ିଲା ନାଜର ଗୃହିଣୀଙ୍କ ନାମ ବିସ୍କୀ—ଅସଲ ନାମ ହେଉଛି ବିଶାଖା । ଆମ୍ଭେମାନେ ଏତେବେଳଯାଏଁ ନାଜରାଣୀ—ସା'ନ୍ତାଣୀ ଲେଖି ପାଠକ ମହାଶୟଙ୍କୁ ବିରକ୍ତକରିଅଛୁଁ—ଜଣା ତ ନଥିଲା, କ'ଣ କରିବୁ ? ଏଡ଼େ ଘର ସା'ନ୍ତାଣୀଙ୍କ ନାମ କ'ଣ ଦାଣ୍ଡରେ ପଡ଼ିଛି ଯେ ଲେଖିପକାଇଲେ ହେଲା ?

ବୋଉଙ୍କ ଗୋଡ଼ଧୁଆ ନିମନ୍ତେ ଚିତ୍ରକଳା ଲୋଟାଏ ଜଳଧରି ଛିଡ଼ାହୋଇଛି । କହିଲା—''ଆସନ୍ତୁ, ଆସନ୍ତୁ, ବୋଉସା'ନ୍ତାଣୀ । ପାଦପଖାଳ କରନ୍ତୁ ।'' ହାତଧରି ଭିଡ଼ିନେଇ ନଳାମୁହଁ ପାଖରେ ବସାଇଦେଲା, ପାଣି ଢାଳି ଗୋଡ଼ ଧୋଇଦେଲା । ଆବଡ଼ାଖାବଡ଼ା ଗୋଡ଼ ତଳିଟା ଖୁଞ୍ଚା ପରି ବାଜିବାରୁ ନାକଟା କିମିତି ସିଟକୁଥାଏ । ବୋଉସା'ନ୍ତାଣୀଙ୍କ ପରେ ଭାଇସାଆନ୍ତ ଉପସ୍ଥିତ । ଚିତ୍ରା ଥରେ ତାଙ୍କ ପାଦରେ ହାତ ବୁଲାଇଆଣି ନାକପୁଡ଼ା ଯୋଡ଼ାକ ଫୁଲାଇଦେଲା । ଘୃଣାରେ ହାତଟା କାଢ଼ିନେଇ ପାଦରେ ପାଣି ଢାଳିଦେଲା ।

ମା’ ଝିଅ ପୁଅ ଏକ ଜାଗାରେ ବସି ଜଳଖିଆ ସାରିଲେ । ବୋଉ ପଚାରିଲେ, ‘‘ହଇରେ ମା ବିସ୍କୀ, ଏ ଝିଅଟି କିଏ ?’’ ବିଶାଖା ଦେଇ କହିଲେ, ‘‘ମୋ ପୋଇଲୀ ।’’ ଚିତ୍ରା ତା ଶୁଣି ମନ ମଧ୍ୟରେ ଭାରି ଖପା—ହଁ, ତୋ ବାପ ଚଉଦ ପୁରୁଷ ଢେର୍ ପୋଇଲୀ ରଖିଥିଲେ ! କ’ଣ କରିବ—ପେଟପାଇଁ ପିଠି ସହେ, ତୁନି ହେଲା । ବୋଉସା’ନ୍ତାଣୀ ଢେର୍ ବେଳଯାଏଁ ଚିତ୍ରାକୁ ଅନାଇରହିଲେ । ଏଁ—ମୋ ବିସ୍କୀର ପୋଇଲୀ ଏଡ଼େ ସୁନ୍ଦରୀ ! ତା ଦେହରେ ଏତେ ଅଳଙ୍କାର ! ସତେ, ସେ ରାଣୀ ହୋଇଗଲାଣି !

## ନରୁବାବୁର ଅସୁବିଧା

ନରୁବାବୁ କଟକ ଆସିବା ଦିନଠାରୁ ଯାବତ୍ ଅସୁବିଧା ଭୋଗକରୁଛନ୍ତି । ପ୍ରଥମେ ପୁଣି ବିଶେଷ ଅସୁବିଧା ଖାଇବା ବିଷୟରେ । ପ୍ରଥମଦିନ ଖାଇବାକୁ ଯାଇ ନିତାନ୍ତ ବ୍ୟାକୁଳ ହୋଇପଡ଼ିଲେ । ରାତି ପହରକ ସରିକି ରୋଷେୟା-ବ୍ରାହ୍ମଣ ଭାତ ତିଅଣ ଆଉ ଅବଖୁରାରେ ଜଳ ଥୋଇଦେଇ—‘‘ଆସିବା ହେଉ, ଠା’ରେ ବିଜେହେଉ’’ କହି ଚାଲିଗଲା । ନରୁବାବୁ ଆସନରେ ବସିଲେ । ଦିନବେଳେ ଠାହୋଇନାହିଁ—ବଡ଼ ଭୋକ ଲାଗୁଛି । ଆଖି କାନ ବୁଜି ଦି’ଟା ଖାଇଦେଲେ । ମନରେ କଲେ ଦୁଧଟିକିଏ ପିଇଦେଇ ଉଠିଯିବେ । ପାଟିକୁ କିପରି ଲାଗିଲା । ପିଇଲେ ନାହିଁ—ଉଠିଗଲେ । କରୁଣା ଠା’ ଉଠାଇବାକୁ ଯାଇ ଚମକିପଡ଼ିଲା । ବିଚାର କଲା, ଦିନେ ଓଳିଏ କଥା ନୁହେଁ, ସବୁଦିନେ ଚଳିବ କିପରି ?

କରୁଣା ନରୁବାବୁଙ୍କ ପାଇଟି ସାରି ସକାଳୁ ଯାଇ ମଉସାଙ୍କୁ ସମସ୍ତ କଥା ଜଣାଇଲା । ମଉସା ବନ୍ଦୋବସ୍ତ କରିଦେଲେ । ହୋଟେଲର ଜଣେ ରୋଷେୟା ଭଲ ଖାଇବା ଜିନିଷ ବାସନରେ ପୂରାଇ ବସାରେ ଦେଇଯିବ । ସେଥିରେ ଗୋଟିଏ କଥା ହେଲା, ନରୁ ରାତି ଓଳିଟା ଠା’ରେ ବସେନାହିଁ । ମାମୁଁଙ୍କ ବସାରୁ ଯେଉଁ ଶୁଖିଲା ପୁରି ତରକାରି ଆସୁଥିଲା ତାହା ଅଖାଦ୍ୟ, ତାକୁ କରୁଣା ଖାଏ । ନରୁବାବୁଙ୍କ ରାତିଓଳିଟାର ଠା’ ବିଷୟ ମାମୁଁ ମାଇଁ ଗନ୍ଧ ବାସନା ପା’ନ୍ତି ନାହିଁ । ରହିବା ଘରର ମଧ ଭାରି ଅସୁବିଧା । କୋଠରି ଦୁଆରଟା ବନ୍ଦକରିଦେଲେ ଭିତରଟା ରାତିପରି ଅନ୍ଧାରିଆ ହୋଇଯାଏ । ମାମୁଁଙ୍କ କଚେରିଘରେ ଏତେ ଗୋଳମାଳ ହୁଏ ଯେ ନରୁବାବୁ ଦୁଆର ମେଲା ରଖି ପାରନ୍ତି ନାହିଁ । କରୁଣା ଦୁଆରଟା କିଳିଦେଇ ପଢ଼ିବା ସକାଶେ ବତିଟାଏ ଜାଳିଦିଏ ।

ମାମୁଁଙ୍କ ଶାଳକ ରାଘବ ନରୁବାବୁଙ୍କ ସହିତ ସେଇ ଏକାଘରେ ରହିଛନ୍ତି । ରାଘବବାବୁ ପ୍ରଥମେ ଦୁଇ ଚାରିଦିନ ଘରର ଗୋଟାଏ କୋଣରେ ପଡ଼ିଥା'ନ୍ତି । କେବଳ ଶୋଇବା ବେଳଟାରେ ଘର ମଧରେ, ଆଉ ଆଉ ସମୟରେ ପିଆଦା ବା ଚାକରମାନଙ୍କ ସଙ୍ଗେ ବସି ଦିନ କାଟନ୍ତି । ଭରସି ନରୁବାବୁଙ୍କ ପାଖ ପଶିପାରନ୍ତି ନାହିଁ—''ଆଲୋ ବାପଲୋ, ବଡ଼ଲୋକ ପୁଅ, କ'ଣ କହିବ ପରା !'' ସବୁବେଳେ ପାଖରେ ରହିଲେ ଭୟ-ଭଡ଼କ ଭାଙ୍ଗିଯାଏ । ଆଉ ଅପା କହିଦେଇଛନ୍ତି—ନରୁ ତୁମ ଭଣଜା, 'ଭଣଜାବାବୁ' ବୋଲି ଡାକିବୁ ।

ଦିନେ ସକାଳେ ନରୁବାବୁ ପାଠ ଅଭ୍ୟାସ କରୁଛନ୍ତି, ରାଘବମାମୁଁ ପାଖରେ ବସିପଡ଼ିଲେ । ତହିଁ ଆରଦିନଠାରୁ କିତାବଗୁଡ଼ିକ ଓଲଟପାଲଟ କରିବାକୁ ଲାଗିଲେ । ଦିନେ ଖଣ୍ଡେ କିତାବ ମେଲାଇ କହିଲେ, ''ମଲା ମଲା, ଏଇଟା ବଳଦପରି ଦିଶୁଛି । ହୋ-ହୋ-ହୋ ! ଏଇଟା ବିରାଡ଼ି, ଏଇଟା ଗୋଟିଏ ଗଛ । ଭଣଜାବାବୁ ! ଏଖଣ୍ଡ କି ପୋଥି ? ମୁଁ ଟିକିଏ ପଢ଼ନ୍ତି ? ମତେ ଦିନେ କହିଦେବ ।'' କରୁଣା ସହିପାରିଲାନାହିଁ । କହିଲା, ''ଏ ମାମୁଁସା'ନ୍ତ, ଟିକାୟତବାବୁ ଉଠୁଣି ପାଠ ପଢ଼ନ୍ତୁ, ତାଙ୍କୁ କିଛି ବୋଲନା ।'' କରୁଣାର କଥା ଶୁଣି ରାଘବ ମାମୁଁ ମନ ମଧରେ ଭାରି ଖୁସି । କରୁଣା ତାଙ୍କୁ ସା'ନ୍ତ ବୋଲି ଡାକିଲା—ଆଜିଯାଏ ତାକୁ ସା'ନ୍ତ ବୋଲି କେହି ଡାକିନାହିଁ । ଅପା ରାଣୀ—ମାମୁଁ ସା'ନ୍ତ, କଥାଟା ମନରେ କରି ସେ ହସି ହସି ସେଠୁ ଉଠିଗଲା ।

ରାଘବ ମହାନ୍ତି ସଙ୍ଗରେ ଏକତ୍ର ବାସ ଟିକାୟତବାବୁଙ୍କ ପକ୍ଷରେ ଦିନକୁଦିନ ନିହାତି କଷ୍ଟକର ହୋଇପଡ଼ିଲାଣି । ସ୍କୁଲ ବାହୁଡ଼ା ନରୁବାବୁ ଶୀତଳ ଠା'ରେ ବସନ୍ତି—ରାଘବ ମହାନ୍ତି କଟମଟ କରି ଖାଇବାକୁ ଅନାଇଥାଏ । ନିପଟ ମୂର୍ଖ, ଦରିଦ୍ର, ମଫସଲ ଗାଉଁଲିଆ ଲୋକ, ଭଦ୍ର ବ୍ୟବହାର କାହୁଁ ଜାଣିବ ? ନାରୁବାବୁଙ୍କୁ ବଡ଼ ଲାଜମାଡ଼େ—ଦରଖିଆ ଉଠିଯା'ନ୍ତି । କରୁଣାକୁ ଭଲଲାଗେନାହିଁ । ସେ ଦିକ୍‌ଦାର ହୋଇଗଲାଣି ।

## ରାଘବର ନୂଆ ବେଶ

କଟକ ଆସିବା ପରଦିନ ସକାଳେ ରାଘବ ମହାନ୍ତି ସଦର ଦରଜା ପାଖରେ ଛିଡ଼ାହୋଇ ଯିବା ଆସିବା ଲୋକମାନଙ୍କୁ ଦେଖୁଛନ୍ତି । ଇଃ ! କଟକଟାରେ କେତେ ଲୋକମ ! ବାବୁଗୁଡ଼ାକ କେତେ ? ଏଇଟା କ'ଣ ଘୋଡ଼ାଗାଡ଼ି ? ମନ ମଧରେ ବଡ଼

ହସମାଡ଼ିଲା । ଘୋଡ଼ା ଯୋଡ଼ାକ କିମିତି ଶଗଡ଼ରେ ଯୋଚାହେଇଚନ୍ତି । ମନରେ କରିଥିଲେ ଘୋଡ଼ାମାନଙ୍କ କାନ୍ଧ ଉପରେ ଯୁଆଳି ପଡ଼େ ।

ଗୋଟାଏ ପିଆଦା ରାଘବ ମହାନ୍ତିଙ୍କୁ ପଚାରିଲା—''କିରେ ବେହେରା, ତୁ କାଲି ରାତିରେ ଆସିଛୁ ପରା ! କ'ଣ ଆଣିଥିଲୁ—ଦୁଧ ନା ଦହି ?'' ମହାନ୍ତିଏ ଉତ୍ତର ଦେଲେ, ''ଦୁଧ ଦହି କ୍ୟାଁ ଆଣିବି ?'' ପିଆଦା କହିଲା—''ତୁ ମଇଁଷାଳ ବେଠିଆ ଗଉଡ଼ ପରା !''

ମହାନ୍ତିଏ ଆଉ ସମ୍ଭାଳି ପାରିଲେ ନାହିଁ । ମୁହଁଟା ଥମଥମ କରି ଭିତରକୁ ଚାଲିଗଲେ । ଅପାଙ୍କ ଆଗରେ ଗୁହାରିକଲେ । ମାଆ ମଙ୍ଗଳା ଦେଈ ଶୁଣି ଧାଇଁଆସି କହିଲେ, ''ମା ବିସ୍କୀ ! ଶୁଣ୍ ତ, ସେ ଅଳପାଇସିଆ, ଡାକୁଣୀଖିଆ ବନ୍ଧୁବାସ ଦୁଆରେ ପିଲାଟାକୁ କ'ଣ ନ କହିଲା ! ଯା ତ ମା', ଜୁଆଇଁବାବୁଙ୍କ ପାଖରେ କହି ତାକୁ ଗାଳି ଫଜିତ୍ କରା ତ ।'' ବିସ୍କୀ ସ୍ୱାମୀଙ୍କ ପାଖରେ ସବୁକଥା ଜଣାଇଲେ । ନାଜିରବାବୁ କହିଲେ, ''ଯେପରି ବେଶ ଦେଖୁଛି ଲୋକେ ସେହି କଥା କହିବେ ତ ! ସଫାସୁତୁରା ହୋଇ ବାହାରକୁ ବାହାରିବ ସିନା !''

ନାଜରବାବୁ ଜଣେ ପିଆଦା ପଠାଇ ଯୋଡ଼ାଏ ପାଞ୍ଚଗଜି ଖଦି କିଣିଆଣିବାପାଇଁ ବରାଦକଲେ । ବିଶାଖା ଦେଈ କହିଲେ, ''ଚିତ୍ରା ! ଯା' ତ, ଗୋଟାଏ ବାରିକ ଡାକିଆଣ, ରାଘୋକୁ କ୍ଷିଅର କରିଦେଉ । ମାଲପା ମାଖି ଗାଧୋଇଆସୁ ।''

ନଈରୁ ଗାଧୋଇପାଧୋଇ ଆସିବା ବେଳକୁ ବଜାରରୁ ନୂଆ ଲୁଗା କିଣାହୋଇ ଅଇଲାଣି । ରାଘବ ମହାନ୍ତିଏ ନୂଆ ଲୁଗା ପିନ୍ଧି ଦେହର ଚାରିଆଡ଼କୁ ଅନାଉଛନ୍ତି । ମଙ୍ଗଳା ଦେଈ ପଚାରିଲେ, ''ହଇଲୋ ମା' ଚିତ୍ରକଳା ! ମୋ ପୁଅ ରଘୁ କ'ଣ ସୁନ୍ଦର ନୁହେଁ ?'' ଚିତ୍ରକଳା କହିଲା, ''ଏ ବୋଉସା'ନ୍ତାଣୀ ! ସେ ପିଆଦା ଅନ୍ଧ ବୋଲି କ'ଣ ଆଉ କାହାରି ଆଖି ନାହିଁ ? ଗାଁଟାଯାକ ବୁଲି ଆସନ୍ତୁ ତ—ସୁନ୍ଦରପଣ କିଏ ବାଛିବ ଭଲା ।''

ବିଶାଖା ଦେଈ ଯୋଡ଼ାଏ କୁରୁତା ଆଉ ଯୋଡ଼ାଏ ଚାଦର କିଣି ଅଣାଇଦେଲେ । କେତେଦିନ ଯାଏ ରାଘବ ମହାନ୍ତିଏ ବାଟ ଚାଲିପାରିଲେ ନାହିଁ, ଲମ୍ବ ଆଉ ଓସାରିଆ ଲୁଗାଗୁଡ଼ାକ ଛନ୍ଦିହେଉଥାଏ । ପୋଷାକ ପିନ୍ଧିଲେ ମହାନ୍ତିଏ ଘରେ ବସିପାରନ୍ତିନାହିଁ, ସଡ଼କରେ ପିଆଦାମାନଙ୍କ ପାଖରେ ଚାରିଥର ବୁଲିଆସନ୍ତି ।

# ପ୍ରଭୁଦୟାଲ ଭଗତ

ରାମଦୟାଲ ଭଗତ ବିହାରଦେଶର ଲୋକ । ଗୋଟିଏ ଶୁଣ୍ଢି ମହାଜନ । ଜଣେ ବଡ଼ ବେପାରୀର ନୌକର ହୋଇ କଟକ ଆସିଥିଲା । ଆପଣାର ଦରମା ଟଙ୍କା କେତୋଟି ପାଣ୍ଠିକରି ମସଲା କାରବାର ଆରମ୍ଭକଲା । ଛୋଟ କାରବାର ବଢ଼ିବଢ଼ି ଲକ୍ଷକରୁ ଟପିଲାଣି । ଏତେ ଯେ ସମ୍ପତ୍ତି, ଭୋଗ କରିବ କିଏ ? ଭଗତେ ଆଣ୍ଠୁକୁଡ଼ା । ଠାକୁରେ କୃପା କଲେ, ବୁଢ଼ାକାଳରେ ଗୋଟିଏ ପୁଅ ହେଲା । ପ୍ରଭୁଙ୍କ ଦୟାରୁ ପିଲାଟିଏ ପାଇଲେ, ସେଥିଲାଗି ପୁଅର ନାମ ଦେଲେ ପ୍ରଭୁଦୟାଲ ।

ଗୋଟାଏ ମାମଲାରେ ସାକ୍ଷୀ ଦେବା ସକାଶେ ରାମଦୟାଲ ଦିନେ କଚେରିକୁ ଯାଇଥିଲେ । ଭଗତ ଦେଖିଲେ, ହାକିମ ସିଂହାସନରେ ବସିଛନ୍ତି । ଶହ ଶହ ଲୋକ ବନ୍ଦଗୀ କରିବାପାଇଁ ହାଜର । ଆଉ କ'ଣ ଦେଖିଲେ କି ଗୋଟାଏ ଓକିଲ ଆସି ହାକିମଙ୍କୁ କେତେଟା କଥା କହିଲାପରେ ଜଣେ ଲୋକ ପାଖରୁ ମୁଠାଏ ଟଙ୍କା ନେଇ ପକେଟରେ ଗଳାଇପଳାଇଲା । ଲୋକମାନଙ୍କଠାରୁ ବୁଝିଲେ, ଏମାନେ ଇଂରାଜୀ ପଢ଼ି ହାକିମ ଆଉ ଓକିଲ ହୋଇଛନ୍ତି । ସେ ଠିକ୍ କଲେ ପ୍ରଭୁ ଦୟାଲକୁ ଇଂରେଜୀ ପାଠ ପଢ଼ାଇଲେ ସେ ଗୋଟିଏ ହାକିମ, ନିକୁଛରେ ଓକିଲଟାଏ ହୋଇଯିବ । ସେଦିନୁ ପ୍ରଭୁଦୟାଲଙ୍କ ଇଂରେଜୀ ପଢ଼ାର ବନ୍ଦୋବସ୍ତ ହୋଇଗଲା । ପ୍ରଭୁଦୟାଲ ଘରେ ଚୌକି ବେଞ୍ଚ ପୂରିଗଲାଣି । ସେ ଯେ ହାକିମ ହେବ ସେହିପରି ତୟାର ହେଉଛି ।

ମଣିଷ ମରନ୍ତି—ରାମଦୟାଲ ବୁଢ଼ାହୋଇଥିଲା, ମରିଗଲା । ବୁଢ଼ୀ ଆଗରୁ ଚାଲିଯାଇଥିଲେ । ଆଠ ଦଶ ବର୍ଷ କାଳ ସ୍କୁଲକୁ ଯା' ଆସ କରି ପ୍ରଭୁଦୟାଲ ଥାର୍ଡ଼କ୍ଲାସରୁ ସେକେଣ୍ଡକ୍ଲାସକୁ ପ୍ରମୋଶନ ପାଇଥିଲେ—ବିଷୟ ସମ୍ଭାଳିବାକୁ ହେବ, ସ୍କୁଲରୁ ନାମ କଟାଇ ଆଣିଲେ । ତାଙ୍କ ସହିତ ଜଣେ ବଡ଼ଲୋକ ଇଂରେଜୀପଢୁଆ ବାବୁଙ୍କର ପରିଚୟ—ଭଲ ପୋଷାକ ପିନ୍ଧି ସଭାସମିତିକୁ ଯିବା ଆସିବା ଚାଲିଛି । ସଙ୍ଗୀମାନଙ୍କ କଥାରୁ ଜଣାଯାଏ, ସେ ଭଲ ଗାଇପାରନ୍ତି । ମାସରୁ ଅଧେ ଦିନ ଘରଠାରେ ଭୋଜି ହୁଏ । ଖାଦ୍ୟପେୟ ବାବୁମାନଙ୍କ ମନ-ମାଫିକ ହୁଏ ।

ଦେଖୁଁ ଦେଖୁଁ ବର୍ଷ ଦୁଇତିନିଟା ଭିତରେ ସଂପତ୍ତିଗୁଡ଼ାକ କାହିଁ ଉଡ଼ିଗଲା । ଶେଷକୁ ଘରଖଣ୍ଡ ମଧ୍ୟ ଗଲା । ଏତେ ଦୁର୍ଦ୍ଦଶାରେ ମଧ୍ୟ ତା'ର କିଛି ଚିନ୍ତାନାହିଁ, ସଞ୍ଜକୁ ସଞ୍ଜ ନିଶାବାଡ଼ଟା ଚଳିଗଲେ ହେଲା । ଇଚ୍ଛା କଲା ପିଆଦା ହେବ । ବଜାରର ଗୋଟିଏ ସ୍ତ୍ରୀଲୋକ ପାଖରୁ ଖବର ପାଇ ନାଜର ନଟବର ଦାସଙ୍କ ସାଙ୍ଗରେ ଭେଟହେଲା ।

ସୁନ୍ଦର ଚେହେରା, କଥାବାର୍ତ୍ତାର ଢ଼ଙ୍ଗଢ଼ାଙ୍ଗ ଦେଖି ନାଜରବାବୁ ବଡ଼ ଖୁସି । ସେ ପୁଣି ଇଂରେଜୀ ଜାଣେ । ନାଜରବାବୁ ତାକୁ ଗୋଟିଏ ପିଆଦାଗିରି କାମରେ ଲଗାଇ ଦେବାକୁ ମନ ମଧ୍ୟରେ ସ୍ଥିରକଲେ । ସ୍ଥିର ହେଲା, ପ୍ରଭୁଦୟାଲ ଶହେ ଟଙ୍କା ନଜରାନା ଦାଖଲ କଲେ କାମ ପାଇବ । ଟଙ୍କା ଦାଖଲ ହେଇନାହିଁ—କାମ ପାଇନାହିଁ । ତା'ର ନାଜରବାବୁଙ୍କ ବସାକୁ ଯିବା ଆସିବା ଥାଏ ।

ପ୍ରଭୁଦୟାଲ ରାଘବକୁ ଦୁଇ ଚାରିଥର ଦେଖି ତାହାକୁ ମନରେ ଅଟକଳ କରିନେଲା । ଦିନେ ସକାଳେ ପ୍ରଭୁଦୟାଲ ତା' ପାଖକୁ ଚାଲିଯାଇ ହସିହସି କହିଲା, ''ରାମ ରାମ ରାଘବବାବୁ ! ରାମ ରାମ ।'' ରାଘବଙ୍କ ମନ ଆନନ୍ଦରେ ଉଚ୍ଛୁଳିଉଠିଲା । ଗାଁରେ ଡାକନାମ ଥିଲା ରଘୁଆ ମହାନ୍ତି, ସେ ଏଠାରେ ଏକାବେଳକେ ବାବୁ ପାଲଟିଗଲାଣି । ମାତ୍ର 'ରାମ ରାମ' କ'ଣ କହିଲା, ବୁଝିପାରିଲାନାହିଁ । କ'ଣ ଉତ୍ତର ଦେବ ଜଣାନାହିଁ । ଚଲାଖ ପ୍ରଭୁଦୟାଲ, ବାବୁଙ୍କ ହାତ ଧରି ଇଂରେଜୀ ଧରଣରେ ଦୁଇଥର ଝିଙ୍କାଝିଙ୍କି କଲା । ଅଳ୍ପ ସମୟରେ ଦୁଇଜଣଙ୍କ ମଧ୍ୟରେ ଭାରି ବନ୍ଧୁପଣ ହୋଇଗଲା ।

ଦୁଇ ଦୋସ୍ତ ମିଶି ସବୁ ସ୍ଥାନରେ ବୁଲନ୍ତି, ଭଦ୍ରଲୋକ ନଯିବା ଜାଗାକୁ ଯା'ନ୍ତି, ସଂଗୀତ ଶୁଣନ୍ତି, ନାଚ ଦେଖନ୍ତି । ଯେଉଁଦିନ ଇଂରେଜୀ ରଙ୍ଗପାଣିରୁ କିଛି ପେଟରେ ପଡ଼ିଗଲା, ସେତେବେଳେ ମନେକଲା ଦେବତାମାନେ ଯେଉଁ ଅମୃତ ପିଅନ୍ତି ଏ ସେହି ଅମୃତ । ପ୍ରଭୁଦୟାଲ ଦେବତାଙ୍କ ମଧ୍ୟରେ ଜଣେ, ସେ ନିଜେ ବି ଗୋଟିଏ ଦେବତା ପାଲଟିଗଲାଣି । ଏପରି ଆନନ୍ଦଟା ଜୀବନରେ କେବେ ଜାଣିଥିଲେ । ଏଣେ ପ୍ରଭୁଦୟାଲ ମନରେ କରୁଥାଏ, ଡାହୁକ ମାଂସ ଖାଇବା ପାଇଁ ଶିକାରୀ ଗୋଟିଏ ଡାହୁକ ପୋଷେ । ଭଲ ଚଢେଇଢ଼ଟିଏ ମିଳିଛି, ପୋଷା ମନାଇ ପାରିଲେ କାମ ଫତେ । ନାଜର ବସାରେ ବହୁତ ଟଙ୍କା, ଗୋଟିଏ ମାଈ ଗଧ ତାକୁ ରଖୁଛି । କଥାଟା ବିଶେଷ ରୂପରେ ଜଣା । ହେଲେ, ହାତ ବଢ଼ାଇବାର ଉପାୟ ତ ନଥିଲା, ଏବେ ମନରେ କଲା— କାମ ଫତେ ।

ପ୍ରଭୁଦୟାଲ ଦିନେ କହିବସିଲା, ''ଦୋସ୍ତ ! ଜାଣ ତ ରୋଜ ରୋଜ ରାତିରେ ଟଙ୍କା ଖରଚ—ମୋ ହାତଟା ଉଚ୍ଛୁଣିକା ଟିକିଏ ଖେଞ୍ଚ ଅଛି । ମୋର କଲିକତାରୁ ହୁଣ୍ଡି ଆସିବାକୁ ଡେରିଅଛି—ତୁମେ ଦିନାକେତେ ଚଳାଇଦିଅ, ମୋ ଟଙ୍କା ଆସିଗଲେ ଆଉ ପରବା କ'ଣ ?''

ରାଘବବାବୁ—''ଦୋସ୍ତ ! ମୁଁ ଟଙ୍କା କାହୁଁ ପାଇବି ? ମୋ ହାତରେ ଟଙ୍କା ନାହିଁ ।''

ଭଗତ ମନରେ କଲା- ହୁଁ, ତୋ ବୋପାର ପରା ଗଣ୍ଠିରି ମୋ ପାଖରେ ଅଛି, ରୋଜ ରୋଜ ମାରି ଖାଇବୁ ? କହିଲା, ''ସେ କ'ଣ ଦୋସ୍ତ ! ତୁମ ଅପା ରାଣୀ, ତୁମେ ଗୋଟାଏ ବାବୁ, ଟଙ୍କା ନାହିଁ କ'ଣ ? ଦେଖ ଦୋସ୍ତ, ନାଜରବାବୁ କଚେରି ବାହୁଡ଼ା ଟଙ୍କାଗୁଡ଼ାକ ତୁମ ଅପା ହାତରେ ଦିଅନ୍ତି—ସେ ଟଙ୍କାଗୁଡ଼ାକ ଅପାଙ୍କ ବିଛଣା ମାଣ୍ଡି ତଳେ ଦୁଇ ତିନି ଦିନ ପଡ଼ିରହେ, ତା ବାଦେ ସା'ନ୍ତାଣୀ ବାକ୍ସରେ ରଖନ୍ତି । ସେଥିରୁ କିଛି କିଛି ଟଙ୍କା ଆଣିବ । ଖବରଦାର୍ ! ଏକାବେଳକେ ସବୁ ଟଙ୍କା ଆଣିବ ନାହିଁ ।''

ମହାନ୍ତିଏ ଟିକିଏ ଗୁମ୍ ମାରି ବସିଲେ, ଦେହଟା ଥରିଉଠିଲା । ଭଗତ ପିଠିରେ ହାତ ମାରି କହିଲା, ''ଚିନ୍ତା ନାହିଁ ଦୋସ୍ତ ! ଡରନାହିଁ—ଘେନିଆସ ।'' ରାଘବବାବୁ ଦେଖିଲେ, ଟଙ୍କା ନଆଣିଲେ ନୁହେଁ—ଦୋସ୍ତ କ'ଣ ମନେକରିବ ? ମଜାଟା ବି ବନ୍ଦହୋଇଯିବ ।

ଦିନାକେତେ ଖରଚ ବେଶ୍ ଚଳିଲା । କେଜାଣି କିଆଁ ଅପା ଏବେ ଟଙ୍କା ବାହାରେ ପକାନ୍ତି ନାହିଁ, ସାଙ୍ଗେ ସାଙ୍ଗେ ସିନ୍ଦୁକରେ ରଖି କୋଳପଦିଅନ୍ତି । ଭଗତ କ'ଣ ହଟିବାର ଲୋକ ! ସାଙ୍ଗେ ସାଙ୍ଗେ ମହଣର ଛାପ ଅଣାଗଲା, ସବୁ ବାକ୍ସ ସିନ୍ଦୁକର କଞ୍ଚିକାଠି ତିଆରି କରିପକାଇଲେ । ଏଣିକି ଆଉ ଚିନ୍ତା କ'ଣ ? ଏତେ ଯେ କାଣ୍ଡ—ନାଜରବାବୁଙ୍କୁ ସବୁ ଅଜଣା । ବିଶାଖା ଦେଈଙ୍କର ବି ଭାଇ ଉପରେ ଭାରି ଦୟା, ଖୁବ୍ ବିଶ୍ୱାସ ।

## ନରିପୁର କିଲ୍ଲାର କାର୍ଯ୍ୟ

ରବିବାର କଚେରି ବନ୍ଦ । ଉପରଓଳି ବସା କଚେରିରେ ବସି ନାଜରବାବୁ ନରିପୁର କିଲ୍ଲାର କାମ ବୁଝନ୍ତି । ଆଜି କଚେରିଟା ଭାରି ଭିଡ଼ । ମଫସଲର ଅମଲାମାନେ ଅନ୍ୟାୟ କରିବାରୁ ଦଶ ବାର ଜଣ ଫେରାଦ ହେବାକୁ ଆସିଚନ୍ତି । ଚାରିଜଣ ପାଇକ ଅମଲାମାନଙ୍କ ଚିଠି ଧରି ହାଜର । ନାଜରବାବୁ ମକ୍ରାମପୁର ମକଦ୍ଦମ ମଦନ ମହାନ୍ତିର ରିପୋର୍ଟ ତୁନିତୁନି ପାଠ କରି ପଚାରିଲେ, ''ଭୀମା ସାମଲ ହାଜର ?'' ପିଆଦା ଡାକିଦେବାରୁ ଗୋଟାଏ ଲୋକ ବେକରେ ପଟକା ପକାଇ ଲମ୍ବହୋଇ ଗୋଡ଼ତଳେ ପଡ଼ିଗଲା ।

ନାଜରବାବୁ—''ବେ ! ତୋ କଥା କ'ଣ ଅଛି କହ—ଶୋଇପଡ଼ିଲୁ ଯେ !''

ସାମଲ ସେହିପରି ପଡ଼ିରହି କହିଲା, ''ମୋର କୁଟୁମ୍ବ ଭାସିଗଲେ । ଆପଣ ମୋ ବେକରେ ଛୁରିମାରନ୍ତୁ—ମତେ କଣିକାଏ ବିଷ ଦେଉନ୍ତୁ—ଖାଇକରି ଏଇଠି ମରିବି ।''

ନାଜରବାବୁ—''ବେ ! ମରିବାକୁ ମନ ଥିଲେ ପଦାକୁ ଯାଇ ମର, ଯା । ତୋ କଥା କ'ଣ କହ ।''

ସାମଲ—''ଧର୍ମ ଅବତାର ! ଗାଁ ତଳ କିଆଗହୀର ଚକରେ ମୋର ସାତମାଣ ଜମି—ସାତପୁରୁଷରୁ ଦଖଲ । ମକଦ୍ଦମ ଶାମ ସାଉ ମହାଜନଠାରୁ ଶହେ ଟଙ୍କା ଲାଞ୍ଚ ଖାଇ ମୋ ଜମି ତାକୁ ଦେଇଛନ୍ତି । ମୁଁ ବେକରେ ଦଉଡ଼ିଦେବି ।''

ନାଜର—''ନାହିଁ, ମକଦ୍ଦମ ତ ଲେଖିଛି, ଅଶିଟଙ୍କା । ଶଳା ମିଛୁଆ ! ଆଚ୍ଛା,ସେ କଥା ବୁଝାଯିବ । ପିଆଦା ! ଲୋକଟାକୁ ବାହାରକରିଦିଅ ।'' ସାମଲ କାନ୍ଦିଉଠିଲା ।

ପିଆଦା ଡାକିଲା—''ଗୁହାରିଆ ହାଜର !'' ଏକାବେଳେ ପାଞ୍ଚଛଅଟା ଲୋକ ଗୋଡତଳେ ପଡ଼ିଗଲେ । ନାଜରବାବୁ ଖପାଟାଏ ହୋଇ କହିଲେ, ''ଶଳାଙ୍କର ସବୁଥିରେ ମେଳି,ଏକ ବିଚାର ।'' ପିଆଦା ବୁଝାଇଦେଲା, ଜଣ ଜଣ କରି କହ !

ବାଉରି ବାରିକ—''ଆଜ୍ଞା, ମୋ ଖଜଣା ବରଷକୁ ଛ'ଟଙ୍କା ନ'ଅଣା ଦି'ପଇସା । ଆପଣଙ୍କ ପାଞ୍ଜିଆ କେତେରକମ ଖର୍ଚ୍ଚ ଭିଡ଼ି ଆଠ ଟଙ୍କା ଆଠ ଅଣା କଲେ, ତାହା ବି ଦେଲି । ଆହିରି କହୁଛନ୍ତି ଯେ ଦି'ଟଙ୍କା ଛ'ଅଣା ବାକି ।''

ନାଜରବାବୁ-''ପାଉତି ଦେଖା ।''

ବାରିକ—''ଖଜଣା ନେଇ ମତେ ପାଉତି ଦେଲେ ନାହିଁ ।''

ନାଜରବାବୁ—''ସେ ମେଳିଆ ରଙ୍ଗାଧରିଆ ବୁଢ଼ା ତତେ ଏଇ କଥା ବତାଇ ପଠାଇଛି ପରା ! ଆଚ୍ଛା,ତୁ ଯା —ମଫସଲ ଗସ୍ତକୁ ଗଲେ ତୋ କଥା ବୁଝାଯିବ । ସେ ପାଖ ଲୋକଟା କିଏ ବେ ? ତୋର କି ନାଲିଶ୍ ?''

ମକ୍ରା ସାହୁ—''ଆଜ୍ଞା,ମୁଁ ସବୁଦିନେ ସରକାରୀ ଖମାରରୁ ଧାନ କରଜ ଖାଏଁ, ମୂଳ କଳନ୍ତର ସବୁ ଶୁଝିଛି । ଏ ବରଷ ଧାନଘରିଆ ଧାନ ଦେଉନାହିଁ —କହିଲା ସବୁ ଧାନ ବିକାସରିଲାଣି । ମତେ ଭରଣେ ଧାନ କରଜ ନଦେଲେ ପାଞ୍ଚ ପରାଣି ଠୋ ଠୋ ମରିଯବେ ।''

ନାଜରବାବୁ —''ପୁରୁଣା ଅମଲା ରଇତ ସମସ୍ତଙ୍କର ଏକ ବିଚାର ! ସରକାରୀ ଧାନ ସବୁ କରଜ ବାହାନାରେ ତୋସରଫ୍ କରିଦେଲେଣି । ତୋ ସା'ନ୍ତ ପରି ମୋତେ...'' ନରୁବାବୁର ନଜର ପଡ଼ିବାରୁ ସେ ତୁନିହୋଇଗଲେ ।

ଆହୁରି ବି ଦଶ ବାର ଜଣ ଗୁହାରିଆ ପ୍ରଜା ଥିଲେ, ବିଚାରର ହାଲ୍ ଦେଖି ସେମାନେ ପଳାଇଗଲେଣି ।

ନାଜରବାବୁ ଆଜକୁ ପାଞ୍ଚ ଛ' ମାସ ହେଲା ମଫସଲ କର୍ମଚାରୀମାନଙ୍କୁ ଚିଠିରେ ବାରମ୍ବାର ଲେଖୁଛନ୍ତି, କୌଣସି କଥାକୁ ନ ଅନାଇ ଯେ ଉପାୟରେ ହେଉ ଟଙ୍କା ଅସୁଲ କର—ଟଙ୍କା ଭାରି ଜରୁର ଦରକାର । ଅମଲାମାନେ ବି ବାବୁଙ୍କୁ ଖୁସି କରିବାପାଇଁ କାମରେ ଲାଗିଛନ୍ତି ।

## ''ମୁଁ ତୁମକୁ ରାଣୀ ବନାଇବି''

ଦିନଯାକ କାମ କରି ନାଜରବାବୁ ଥକିପଡ଼ିଛନ୍ତି । କଚେରି ବାହୁଡ଼ା ଜଳଖିଆ ଖାଇବା ଆଗରୁ ବିଶାଖା ଦେଈ ଗୋଟାଏ ସାନ କାଚଗ୍ଲାସ୍‌ରେ ଗୋଟାଏ ଇଂରେଜୀ ଲାଲ୍ ରଙ୍ଗ ଔଷଧ ଆଣି ହାତକୁ ବଢ଼ାଇଦିଅନ୍ତି । ନାଜରବାବୁ ଔଷଧର ନାମ ଦେଇଥା'ନ୍ତି ଦିଲ୍‌ଖୋସ୍ । ଦିନେ କଚେରିରୁ କିଛି ବେଶି ରୋଜଗାର ହୋଇଥିଲା—ସଞ୍ଜବେଳେ ଔଷଧଟା ବି ଭଲ ଧରିଛି । ଆଜି ବାବୁଙ୍କ ମନ ଭାରିଖୁସି । ଟାଉକରି କହିବସିଲେ—''ଦେଖ, ମୁଁ ତମକୁ ରାଣୀ ବନାଇଦେବି ।''

ବିଶାଖା ଦେଈ—''ମୁଁ ତ ରାଣୀ ହୋଇଛି ।''

ନାଜରବାବୁ ହସିହସି କହିଲେ—''ମଲା—ମଲା, ତୁମେ ପୁଣି କେବେ ରାଣୀ ହେଲ ?''

ବିଶାଖା—''କଁ୍ୟା ? ବୋଉ ଆଉ ଚିତ୍ରା ମତେ ରାଣୀ ବୋଲି ଡାକନ୍ତି ।''

ନାଜରବାବୁ—''ନାହିଁ, ନାହିଁ, ସେ'ଟା କିଛି କଥା ନୁହେଁ ।''

ବିଶାଖା—''ତେବେ ବନାଇଦିଅ—ଆଜି ବନାଇଦିଅ ।''

ନାଜରବାବୁ—''ସେ କ'ଣ ସହଜ କଥା, ଢେର୍ ଫିକର ଅଛି । ଢେର୍ ଟଙ୍କା ଦରକାର—ମୁଁ ଯାହା କହୁଛି, ଶୁଣ । ଖବରଦାର୍ ! କଥା ପେଟରେ ରଖିବ । ନରିପୁର କିଲ୍ଲାଟା ଆମର ହୋଇଗଲେ ତୁମେ ରାଣୀ ହେବ ।''

ବିଶାଖା—''କଁ୍ୟା, ନରିପୁର ତ ଆମର ।''

ନାଜରବାବୁ—''ନାହିଁ, ନାହିଁ, ଆମେ ମାଲିକ ନୋହୁଁ, ମାଲିକ ନରୁବାବୁ—ଆମ ଜିମାରେ ଅଛି ।''

ବିଶାଖା—''ମ, ମ ! ତୁମେ ହାକିମ, ତୁମେ ମାଲିକ ହେବ ନାହିଁ, ଏ ପିଲାଖଣ୍ଡ ମାଲିକ ହେବ ପରା !''

ନାଜର—''ଏଥର ନାଟବନ୍ଦିରେ ଟଙ୍କା ସରକାରଙ୍କୁ ଦେବାନାହିଁ—କିଲ୍ଲା ନିଲାମ ହୋଇଯିବ—ବେନାମିରେ କିଣିପକାଇବା । ଢେର୍ ଟଙ୍କା ଲୋଡ଼ା—ଗୋଟାଏ ଶୁଣ୍ଢି ମହାଜନ ଘଟଣା କରିଛି—ଏଇଥର ସବୁ ଠିକ୍ ହୋଇଯିବ ।''

ବିଶାଖା ଦେଇ—''ମୋ ପାଖରେ ପାଞ୍ଚକୋଡ଼ି ଦଶକୋଡ଼ି ଟଙ୍କା ଅଛି, ସବୁ ଦେବି, ତୁମେ ସାଇବଙ୍କୁ ଦେଇ ମାଲିକ ହୋଇଆସ—ମତେ ରାଣୀବନାଇଦିଅ ।''

ନାଜରବାବୁ ହସିଲେ, ବୁଲିବାହାରି ବାବୁ ମାଳାଝୁଲି ହାତରେ ଧରିଲେ ।

## ନରିବାବୁର ସ୍ଥାନ ତ୍ୟାଗ

ରାତି ଦଶ ବାଜେ ବାଜେ—ରାଘବ ମହାନ୍ତିଏ ବଜାରରୁ ବୁଲିଆସି ଗୁମ୍‌କରି ନରୁବାବୁ ପାଖରେ ଖଟ ଉପରେ ବସିଗଲେ । କିତାପଗୁଡ଼ାକ ଆଣି ଏଣେତେଣେ ବୁଣିପକାଇଲେ । ତାଙ୍କ ମୁହଁରୁ ଦୁର୍ଗନ୍ଧ ବାହାରୁଥାଏ । ନରୁବାବୁ କହିଲେ, ''ତୁମେ ରୋଜ ରୋଜ ବଜାରରୁ କ'ଣ ଗୁଡ଼ାଏ ଖାଇ ଆସ, ବାୟାପରି କଥା କହ । କାଲି ସକାଳେ ମୁଁ ମାମୁଁଙ୍କୁ ଏସବୁ କଥା କହିଦେବି ।''

ରାଘବ ମହାନ୍ତି ଆପଣା ବିଛଣାରେ ଶୋଇପଡ଼ିଲେ । ମନ ମଧରେ ଡର ପଶିଗଲା । କେବଳ ଏହି ଚିନ୍ତା, ନରୁ ନିଶ୍ଚେ ସକାଳେ ଭିଣୋଇ ସା'ନ୍ତଙ୍କ ଆଗରେ କହିବ । ସେ ନିଶ୍ଚୟ ଘରୁ କାଢ଼ିଦେବେ । ଗାଁକୁ ବାହୁଡ଼ିଯିବି ସିନା—କଟକ ମଜା ତ ମିଳିବ ନାହିଁ । ଏହିପରି ଚିନ୍ତା କରୁ କରୁ କେତେବେଳେ ନିଦମାଡ଼ିଗଲାଣି ।

ରାଘବଙ୍କ ନିଦ ଭାଙ୍ଗିବାମାତ୍ରେ ଦୋସ୍ତଙ୍କ ତୁଣ୍ଡ ଶୁଣିଲେ । ହଠାତ୍ ମନରେ ପଡ଼ିଗଲା—ଦୋସ୍ତ ଭାରି ବୁଦ୍ଧିଆ ଲୋକ, ସେ କିଛି ଉପାୟ କାଢ଼ିବ । ବିଛଣାରୁ ଉଠି ସଲଖେ ସଲଖେ ଦୋସ୍ତ ପାଖକୁ ଚାଲିଗଲେ । ନିରୋଳାରେ ବସି ପରାମର୍ଶ ଚଳିଲା । ରାଘବ ମହାନ୍ତିଙ୍କ ମନ ଭାରି ଖୁସି ।

ରାଘବ ମହାନ୍ତି ଯାଇ ଭଉଣୀ ପାଖେ ସକେଇ ହେଇ କହିଲା—''ଅପା ଶୁଣ ! ନରୁ ମତେ ଢେର୍ ଗାଳିଦେଲା ।''

ଅପା ପଚାରିଲେ—''କ'ଣ ଗାଳିଦେଲାରେ ? ମତେ କହ ବୁଝିବି—ତୁ କାନ୍ଦନା ।''

ରାଘବ ମହାନ୍ତିଏ କହିଲେ—''ନରୁ ମତେ କହିଲା, ଶଳା ଅଇଁଠାଖିଆ—ପୋଇଲା । ମୋ ମାମୁଁ ଘରେ ପଶିଛୁ, ଆଜି ମାମୁଁ ପାଖରେ କହି ଦୂର୍ କରାଇବି । ନରୁ ବଜାରରୁ କ'ଣ ନିଶା ଗୁଡ଼ାଏ ଖାଇ ଆସେ, ତା ମୁହଁ ଗନ୍ଧାଉଥାଏ । ତୁମେ ଯେ ରୋଜ ରୋଜ ପୁରି ତରକାରି ପଠାଅ, ସେ ସବୁ ଭଣ୍ଡାରି ଖାଏ, ନରୁ ବଜାରରୁ ନିଶା ଖାଇ ଆସି ଶୋଇପଡ଼େ । ଗୁରୁବାର ଓଷାଦିନ ରାତିରେ ତୁମେ ପୁରି ପିଠା ବନାଇ ପଠାଇଲ—ନରୁ ଗୋଡ଼ରେ ଫୋପାଡ଼ିଦେଲା, କହିଲା—''ତାଙ୍କ ଘରେ ପୋଇଲୀମାନେ ତା'ଠାରୁ ଭଲ ରାନ୍ଧିଜାଣନ୍ତି ।''

ବିଶାଖା ଦେଖି ରାଗରେ କମ୍ପୁଛନ୍ତି, ଡାକିବାପାଇଁ କାହାକୁ ପଠାଇବାକୁ ତର ସହିଲାନାହିଁ, ଆପେ ଧାଇଁଗଲେ । ଦୁଆରବନ୍ଧଟା ନୂଆଣ, ଢାଇକରି ମୁଣ୍ଡରେ ବାଜିଲା ଯେ ଓଲଟି ପଡୁ ପଡୁ ବସିଗଲେ । ଦଣ୍ଡକବାଦେ ଦୁଆରବନ୍ଧ ଉପରଟା ଧରି ଗର୍ଜନ କରି ଡାକିଲେ—''ନରୁ, ନରୁ, ଏ ନରୁ !''

ସେ ଭୟଙ୍କର ଗର୍ଜନ ଶୁଣି ନରୁବାବୁଙ୍କର ହଂସାଉଡ଼ିଗଲାଣି । ଚାଟଶାଳୀ ପିଲା ବେତହାତିଆ ଅବଧାନ ଆଗରେ ଛିଡ଼ାହୋଇ ଯେମନ୍ତ ଥରୁଥାଏ, ମାଈଁଙ୍କ ଆଗରେ ଛିଡ଼ାହୋଇ ନରୁବାବୁ ସେହିପରି ଥରୁଛନ୍ତି ।

ମାଈଁ ଗର୍ଜନକରି କହିଲେ—''ହଁ ରେ ନରୁ ! ବାପ କିଏ, ମାମୁଁ କିଏ ! ତୁ ପିଲାଖଣ୍ଡ ମାମୁଁଙ୍କୁ କହିବୁ—ଶଳା, ଅଇଁଠାଖିଆ ? ଅଇଁଠାଖିଆ କିଏରେ ? କିଏ କାହାର ଘରେ ପଶିଛିରେ ? ରାଇଜଟା ମାମୁଁ ଦୟାକରି ରଖିନଥିଲେ କୁଆଡ଼େ ଉଡ଼ି ପୋଡ଼ିଯାଆନ୍ତାଣି ।''

ମାଈଁ ଗାଳିଦେଇ ଚାଲିଗଲେଣି । ନରୁବାବୁ କେତେବେଳଯାଏଁ ଏହିପରି ଛିଡ଼ା ହୋଇ ରହନ୍ତେ କେଜାଣି, ଟିକିଏ ପେଲିଦେଲେ ପଡ଼ିଯିବେ ପରା ! ନରୁବାବୁଙ୍କ ବାହୁ ଧରି ଚିତ୍ରା କହିଲା, ''ନାହିଁ ବାବୁ, ନାହିଁ ବାବୁ ! ମାଈଁ ଖପା ହୋଇ କ'ଣ କଥାଟାଏ କହିପକାଇଲେ, ସେ କିଛି ନୁହେଁ । ଉଚ୍ଛୁଣି ମାଈଁ ସା'ନ୍ତାଣୀ ଫେର୍ ଭଲପାଇବେ ଯେ ।'' ମନ ମଧରେ କହୁଥାଏ—ଘୁଷୁରିଆଣୀଟା କ'ଣ ଦେବତାପୁଅକୁ ଚିହ୍ନିବ । ବାହୁ ଧରି ଘେନିଯାଇ ତାଙ୍କ ବସା ଭିତରେ ଛାଡ଼ିଦେଇ ଆସିଲା ।

ଦୈବଯୋଗରେ କରୁଣା ତେତେବେଳେ ବଜାରକୁ ଯାଇଛି । ନରୁବାବୁ ଘରେ ବସିବେ କ'ଣ, ବାହାରକୁ ବାହାରିପଡ଼ିଲେ । ମୁଣ୍ଡପୋତି ସଡ଼କରେ ଚାଲିଛନ୍ତି । ଚାଲିଛନ୍ତି ତ ଚାଲିଛନ୍ତି । ଲୋକଟାଏ ତେଲ ମାଖି ନଈବନ୍ଧ ଉପରେ ବସି ଦାନ୍ତଘଷୁଛି । ନରୁବାବୁ ତା ପାଖଦେଇ ଚାଲିଛନ୍ତି, ବାଟକୁ ନଜର ନାହିଁ, ସଳଖେ ସଳଖେ ଚାଲିଛନ୍ତି । ସେ ଲୋକ ଦେଖିଲା—ଆଉ ଦୁଇ ପାହୁଣ୍ଡ ଆଗକୁ ଗଲେ କାଠଯୋଡ଼ି ନଈ ପଥରବନ୍ଧ ତଳେ କଚାଡ଼ିହୋଇ ପଡ଼ିବେ । ଖୁବ୍ ପାଟିଟାଏ କରି ଡାକିଦେଲା, ''ଏ ପିଲା ବାବୁ !'' ଡାକ ଶୁଣି ନରୁବାବୁ ଗୁମ୍‌କରି ଛିଡ଼ାହୋଇଗଲେ । ଦେଖିଲେ, ଆଗରେ ବନ୍ଧ ତଳ, ଯିବାର ବାଟ ନାହିଁ । ଟିକିଏ ଛିଡ଼ା ହୋଇ ପଛକୁ ଫେରିଲେ । ନଦୀକୂଳର ଗୋଟାଏ ବଡ଼ ବରଗଛ ମୂଳରେ ବସିଲେ ।

ଜଣେ ବାବୁ ତେଲ ମାଖି ଚାରିଚଉତା ଗାମୁଛାଟାଏ କାନ୍ଧରେ ପକାଇ ଗାଧୋଇବାକୁ ଚାଲିଛନ୍ତି । ବାବୁଟି ଦେଖିଲେ ବରଗଛ ମୂଳରେ ଗୋଟାଏ ପିଲା ମୁଣ୍ଡପୋତି ବସି

କାନ୍ଦୁଚି । ପିଲାଟି ଚିହ୍ନାଚିହ୍ନା ପରି ଜଣାପଡ଼ିଲା । ପାଖକୁ ଯାଇ ଭଲକରି ଅନାଇଲେ । ପଚାରିଲେ, ''ନରୁବାବୁ ନା କିଏରେ ?'' ନରୁବାବୁ ମୁଣ୍ଡଟେକି ଦେଖିଲେ, ଆଗରେ ମଉସା ଠିଆହୋଇଛନ୍ତି । ଧଡ଼ପଡ଼ ହୋଇ ଛିଡ଼ାହୋଇଗଲେ । ସମ୍ଭାଳି ନପାରି ଭୋ'କରି ରଡ଼ିଟାଏ ପକାଇଲେ ।

ମଉସା ତା'ର ଗୋଡ଼ରୁ ମୁଣ୍ଡଯାଏଁ ଦୁଇ ତିନିଥର ଅନାଇଲେ—କିଛି ପଦେ ବି କଥା କହିଲେ ନାହିଁ । ଆଉ ଗାଧୋଇ ଯିବେ କ'ଣ, ନରୁବାବୁଙ୍କ ହାତଧରି ବସାକୁ ବାହୁଡ଼ିଲେ । ମଉସା ନିଜ ଗାମୁଛାରେ ନରୁବାବୁଙ୍କ ଦେହ ପୋଛିପାଛିଦେଲେ । ପଙ୍ଖା କରିବାକୁ ଯୋଡ଼ାଏ ଭଣ୍ଡାରି ଲାଗିଗଲେ । ଆଉ ଗୋଟାଏ ଚାକର ବାସତେଲ ଆଣି ମର୍ଦ୍ଦନ କରିବସିଲା । ଏଣେ ମଉସା ଦୁଇଜଣ ପାଇକ ସାଙ୍ଗରେ ଚାରିଜଣ ମୂଲିଆ ଆଉ ଆପଣା ଚାକର ଦୁଇଜଣ ଦେଇ ବିଶେଷକରି ବୁଝାଇଦେଇ ହୁକୁମ କଲେ— ନଟବର ଦାସ ବସାରେ ନରୁବାବୁର ଯେତେ କିଛି ଜିନିଷ ଅଛି ଧରି ବାହାରିଆସ । କରୁଣାକୁ ମଧ ସାଙ୍ଗରେ ଡାକିଆଣିବ । ଖବରଦାର୍ ! କାହାରି କଥା ଶୁଣିବ ନାହିଁ, କିଛି ଜିନିଷ ଛାଡ଼ି ଆସିବନାହିଁ ।

## ମାଈଁଙ୍କ ଅନୁତାପ

ନରୁବାବୁ ଚାଲିଯିବାରୁ ବିଶାଖା ଦେଈଙ୍କ ମନରେ ଗୋଟାଏ ଡର ପଶିଗଲାଣି, ସାଆନ୍ତ ଆସିଲେ କ'ଣ କହିବେ, ମୋ ଉପରେ ଖପା ହେବେ ପରା । ମଙ୍ଗଳା ଦେଈ କହିଲେ, ''କାଁ୍ୟା ଏତେ ସନ୍ତାପିହେଉଛୁ, ଭୁଆଇଁବାବୁ ଆସିଲେ କହିଦେବା, ତୁଚ୍ଛାଟାରେ ନରୁ ଆପେ ଚାଲିଗଲା ।''

ଚିତ୍ରକଳା କହିଲା, ''ତୁମେମାନେ ତୁନିପଡ଼ିଥାଅ, ମୁଁ ସବୁକଥା ବୁଝାଇଦେବି ।''

ସକାଳୁ ଉଠି ନାଜରବାବୁ ସାହେବଙ୍କ କୋଠିକୁ ଚାଲିଯାଇଛନ୍ତି । ବେଳ ଦଶଟା ସରିକି ବସାକୁ ବାହୁଡ଼ିଲେ । ଚିତ୍ରକଳା ଜଗିବସିଥିଲା । ଛାନିଆ ହେଲାପରି କହିଲା, ''ସକାଳେ ଆପଣ ଯିମିତି ସାହେବଙ୍କ କୋଠିକୁ ବାହାରିଯାଇଛନ୍ତି, ସେଇ ପୋଡ଼ାମୁହାଁ ପେସ୍କାର ଦି' କୋଡ଼ି କି ଚାରି କୋଡ଼ି ଲୋକ ସାଙ୍ଗରେ ଘେନିଆସିଲା । ନରୁବାବୁଙ୍କର ଯେତେ ଜିନିଷ ଥିଲା ଘେନିଗଲା, ନରୁବାବୁ ତା ସାଙ୍ଗରେ ଚାଲିଗଲା । ସା'ନ୍ତାଣୀ ତେତିକିବେଳୁ ଠା'ବସି କାନ୍ଦୁଛନ୍ତି ।''

ନାଜରବାବୁ ପ୍ରଥମେ ଖପାଟାଏ ହେଲେ । ମନରେ ଦୁଃଖକଲେ । ଦୁଃଖର କାରଣ—ନରୁ ପିଛେ ମାସକୁ ତିରିଶ ଟଙ୍କାରୁ ବଳି ଖରଚ ନୁହେଁ—ମୁଁ ମାସକୁ ଅଢ଼େଇଶ ଟଙ୍କା ଖରଚ ପକାଉଥିଲି । ଏତେଗୁଡ଼ାଏ ଟଙ୍କା ବୃଥାଗଲା । ସା'ନ୍ତାଣୀଙ୍କ ମନରେ ଦୁଃଖ—କେତେ ରକମ ଖଜା, କାକରା, ଏଣ୍ଡୁରି, ସରୁଚକୁଳି, ମଣ୍ଡାପିଠା ଢେଙ୍କାମା' ପଠାଉଥିଲେ । କେତେ ଭଲ ଘିଅ, ଛେନା, ସରୁ ଚାଉଳ, ମୁଗଡାଇ ଆସୁଥିଲା, ଏବେ ଆଉ ଆସିବ ନାହିଁ । ମଙ୍ଗଳା ଦେଈ ଆଉ ରାଘବ ମହାନ୍ତି ଭାରି ଖୁସି—ଗୋଟାଏ କଣ୍ଟା ଗଲା ।

ନାଜରବାବୁ କଚେରିକୁ ଯାଇ ପେସ୍କାରକୁ ଧମକାଇଲେ—ସାହେବ ପାଖରେ ରିପୋର୍ଟ କରିବେ । ପେସ୍କାରବାବୁ ଏତିକି କହିଲେ—''ସାବଧାନ ! ଆଳୁ ଖୋଳୁଖୋଳୁ ମହାଦେବ ବାହାରିବେ ।''

## ଧର୍ମଭାଇ

ଚିତ୍ରାଟା ଚାକରାଣୀ ପରା—ବସାରେ କିଛି ଅଟକିଲେ ନାଜରବାବୁ ତାକୁ ଡାକିଯା'ନ୍ତି । ବାବୁଙ୍କ ଯିବାବେଳ ପ୍ରତିଦିନ ରାତି ଆଠ ବାଜିବା ଉପରେ । କ'ଣ କେଜାଣେ, ଆଜି ଦଶଘଣ୍ଟାରୁ ଉପସ୍ଥିତ । ଚିତ୍ରା ଶୋଇବା ଘରେ ସଉପ ପଡ଼ିଛି । ଭେଣ୍ଡିଆଟାଏ ବସିଛି । ଚିତ୍ରା ପାନଭାଙ୍ଗୁଛି । ଦୁଇଜଣଯାକ ହସିହସି କଥାବାର୍ତ୍ତା କରୁଛନ୍ତି । ନାଜରବାବୁ ଯାଇ ଥକାହୋଇ ଛିଡ଼ାହୋଇଗଲେ । ରାଗରେ ବିଜୁଳିଟା ଯେମନ୍ତ ଦେହସାରା ଖେଳିଗଲା ।

ନାଜରଙ୍କୁ ଦେଖିପକାଇ ଚିତ୍ରା ଭାରି ଗୋଟାଏ ହସି କହିଲା, ''ଆରେ ପ୍ରଭୁ ! ତୋ କପାଳ ଭଲ, ଆଜି ଜାଣ ତୋର ସବୁ ଦୁଃଖ ମେଣ୍ଟିଲା । ଆଜ୍ଞା ସା'ନ୍ତେ ! ଟିକିଏ ଦୟାକର, ଆପଣ ଛହେ ଟଙ୍କା ହୁକୁମ କରିଥିଲେ । ମାସେ ହେଲା ଧାଇଁଛି, କୁଣ୍ଡେଇ କୁଣ୍ଡେଇ ଦି'କୋଡ଼ି ନ' ଟଙ୍କା ଆଠଣା କଲା, ଆଉ ପାରିଲା ନାହିଁ । ମୁଁ ଯୋଡ଼ାଏ ସୁଉକି ମିଶାଇ ଦି'କୋଡ଼ି ଦଶ ପୂରାକଲି । ଏ ମୋ ଧର୍ମଭାଇ—ସା'ନ୍ତଙ୍କ ଗୋଡ଼ତଳେ ପଡ଼ରେ ।''

ନିଆଁରେ ପାଣି ପକାଇଲା ପରି ନାଜରଙ୍କ ରାଗ ଉଣାହୋଇଗଲାଣି । ''ଟିକିଏ ରହନ୍ତୁ ସା'ନ୍ତେ, ପ୍ରଭୁ ଯେ ଟଙ୍କା ରଖିଛି ଘେନିଆସେ''—କହି ଚିତ୍ରା ବାକ୍ସଟା ଫିଟାଇପକାଇଲା । ମଲା ଯା, ସର୍ବନାଶ । ବାକ୍ସ ଅଣ୍ଡାଳି ଦେଖେ ଯେ ନ'ଟା ଟଙ୍କା କେତେ ଅଣା ପଇସା ପଡ଼ିଛି । ସେଇ ଟଙ୍କାଗୁଡ଼ା ଥରକୁଥର ଝମ୍‌ଝମ୍ କରୁଛି ।

ନାଜରବାବୁ ଡାକିଦେଲେ, ''ଥାଉ ଥାଉ, ଉଛୁଣିକା ଟଙ୍କା ଥାଉ ।'' ଚିତ୍ରା ଧଡ଼୍‌କରି ବାକ୍ସ ପକାଇ ଫଁ-କରି ନିଃଶ୍ୱାସଟାଏ ପକାଇ କହିଲା—''ଆଚ୍ଛା, ଆଚ୍ଛା, ଯେତେବେଳେ କହିବେ ବସାରେ ଦେଇଆସିବି । ଦେ'ରେ ପ୍ରଭୁ ! ସା'ନ୍ତଙ୍କୁ ଗୁଡ଼ାଖୁ ଚିଲମେ ସଜାଡ଼ିଦେ' ।'' ଦୁଇ ଚାରି ଦମ୍ ଟାଣି ସା'ନ୍ତଙ୍କ ଆତ୍ମାପୁରୁଷଟା ଶୀତଳ ହୋଇଗଲା । ଏଣେ ତ ଚିତ୍ରାର କଥା ଲହର ଛୁଟିଛି—ଜାଣିବାହେଲେ ସା'ନ୍ତେ ! ମୋର ଯେ ଧର୍ମ-ମା, ତାଙ୍କରି ଦୟାରୁ ମୁଁ ଅଣ୍ଟାଟି କତିରୁ ଭେଣ୍ଟୀଟିଏ । ଏ ଯେ ସାନଭାଇଟା, ଥରେ ଆସି ଭଉଣୀ ଦୁଆରେ ଠିଆହୋଇ ଯା, ନା । ଆଜି କାମ ଅଟକିଲା ବୋଲି ଧାଇଁଆସିଛି ।

## ନରୁବାବୁଙ୍କ ଚିଠି

''ପରମ ପୂଜନୀୟା ଶ୍ରୀ ଶ୍ରୀମତୀ ଜେଜୀମା' ଠାକୁରାଣୀଙ୍କ ଶ୍ରୀଚରଣକୁ ଅଧୀନ ଦାସ ନରହରିର ଶତଶତ ଦଣ୍ଡବତ ଓଳଗି । ମାତା ଠାକୁରାଣୀଙ୍କ ଶ୍ରୀଚରଣେ ମୋହର ଲକ୍ଷଲକ୍ଷ ଜୁହାର । ମୁଁ ଏଣ୍ଟ୍ରେନ୍‌ସ ପରୀକ୍ଷାରେ ପ୍ରଥମ ବିଭାଗରେ ପାସ୍ କରିଥିବା ବିଷୟ ଜଣାଇଥିଲି । ମାସିକ ପନ୍ଦର ଟଙ୍କା ଜଳପାନି ପାଏ । ମୁଁ ତିନିମାସର ଟଙ୍କା ନେଇ ମଉସାଙ୍କୁ ଦେବାରେ ସେ ନେଲେ ନାହିଁ । ଗତକାଲି ପ୍ରିନ୍‌ସିପାଲ ସାହେବ ତିନିମାସର ପଇଁଚାଳିଶ ଟଙ୍କା ମୋତେ ଦେଲେ । ମଉସା ଖରଚ କରିବା ସକାଶେ କହିଲେ । ଏଠିକା ସବୁ ଖରଚ ତ ମଉସା ଦେଉଛନ୍ତି, ମୁଁ ଆଉ କ'ଣ ଖରଚ କରିବି ? ସେହି ୪୫ ଟଙ୍କା ଭୀମ ମଲ୍ଲ ହାତରେ ପଠେଇଲି ।''

''ମୁଁ ଏଠାରେ ପରମ ସୁଖରେ ଅଛି । ମୋ ପଢ଼ାରେ ହରକତ ହେବା ଭୟରେ ମଉସା ଅଲଗା ଦୋତାଲା ଘରଟିଏ ଠିକ୍‌କରିଦେଇଛନ୍ତି । ଉଆସକୁ ଯିବା ସକାଶେ ଲେଖୁଛ, ମାତ୍ର ମୁଁ ପ୍ରତିଜ୍ଞା କରିଛି, ଏଫ୍.ଏ.ପାସ୍ ନକଲେ ଗଡ଼କୁ ଯିବିନାହିଁ । ଦୋଷ ମାଫ୍ କରିବ ।'' (ଇତି)

ପହଡ଼ ଘରେ ନିରୋଳାରେ ବସି ଚିଠି ପଢ଼ାପଢ଼ି ହେଲା । ଧାଈମା' ପଢ଼ିଯାଉଛନ୍ତି—ଚାନ୍ଦମଣି ଆଁଟାକରି ଏକଧ୍ୟାନରେ ଶୁଣୁଥା'ନ୍ତି । ସାତବର୍ଷ ଉତ୍ତାରେ ତାଙ୍କ ନେତ୍ରରେ ଲୋତକ ଆଉ ମୁଖରେ ଆନନ୍ଦଭାବ ଦେଖାଗଲା ।

# ସାବଧାନତା

ନାଜରବାବୁ ଏବେ ଟିକିଏ ଚିନ୍ତାରେ ପଡ଼ିଚନ୍ତି । ସେ ଶୁଣିଚନ୍ତି ଯେ ଯୁଗଳକିଶୋରଙ୍କ ମନ୍ଦିରରେ ଛୋଟରାୟବାବୁ ଓ ଆଉ କେତେ ଗାଁ-ଲୋକ ବସି ମନ୍ତ୍ରଣା କରିଚନ୍ତି—ତାଙ୍କର ସବୁ ଅପକର୍ମ କଥା ସରକାରଙ୍କୁ ଲେଖିବେ ।

ନାଜର ବିଚାରକଲେ, ଏଇ କେତେଟା ମାସ ସୁରୁଖୁରୁରେ ଚଳାଇଦେବାକୁ ହେବ । ରିପୋର୍ଟଟା ପହଞ୍ଚିବା ବି ହରକତ ମାମଲା । ନାଜରବାବୁ ବାହାରିପଡ଼ିଲେ—ଏକାବେଳକେ ଯାଇ ନରୁବାବୁ ଦୁଆରେ ହାଜର । ''ନରୁବାବୁରେ ! ମୋ ନରୁବାବୁରେ !'' ଡାକୁ ଡାକିଡାକି ଦୋତାଲା ଉପରକୁ ଉଠିଗଲେ । ନରୁବାବୁଙ୍କର ପଢ଼ା ଚାଲିଛି । ମାମୁଁଙ୍କୁ ଦେଖି ନରୁବାବୁ ଛିଡାହୋଇଗଲେ । ''ବସ ବାପ, ବସ'' ବୋଲି ମାମୁଁ ଚୌକି ଟାଣିନେଇ ବସିପଡ଼ିଲେ । କରୁଣା ଟିକାଏତବାବୁଙ୍କ ପଛପଟ କବାଟ ଉହାଡ଼ରେ ଲୁଚିକରି ରହିଲା ।

ମାମୁଁ କହିଲେ, ''ଆରେ ନରୁବାବୁ ! ତୁମେ ମୋ କୁଳନନ୍ଦନ, କୁଳଚନ୍ଦ୍ରମା । ମୁଁ ଦୁଇଓଳି ତୁମର ଖବର ନେଉଥାଏ । ତୁମର ଯେ ପାସ୍ ହେଲା ଏକ୍‌ଜାମିନର ମାନଙ୍କୁ ଉଣା ଖୋସାମଦ କରିଛି ? ସୋମନେ ସାଫ୍ କାଗଜ ଦେଖାଇଲେ, ଏଗ୍ରିଗେଟ୍‌କୁ ପୂରା ଚାରିନମ୍ବର ଉଣା । ସେଲାଗି ଢେର୍ ଟଙ୍କା ଖରଚ । ତୁମେ ଯେ ମୋ ବସାରେ ଥିଲ—ଆରେ ଛି ! ସେଟା କ'ଣ ତୁମ ଭଳି ରଜାପୁଅଙ୍କ ରହିବାର ଘର ? ହେଉ ହେଉ, ମଉସା କ'ଣ ପର ? ମୁଁ ତାଙ୍କୁ ହୃଦୟର ବନ୍ଧୁ ବୋଲି ଜାଣେ । ଆଜି କ୍ୟାଁ ଅଇଲି ଜାଣ ? ଗୋଟାଏ ସୁନ୍ଦର ଦୋତାଲା ନୂଆ ଘର ଭଡ଼ା କରି ସଜାଇଦେଇଛି । ତୁମେ ଯାଇ ସେଠି ରହିବ ।''

ନରୁବାବୁ କହିଲେ—''ମଉସାଙ୍କୁ ପଚାରି ଖବର ଦେବି ।''

ମାମୁଁ—''ଅବଶ୍ୟ ! ଅବଶ୍ୟ ! ସେ ହେଲେ ଜଣେ ମୁରବି ।''

ନାଜରବାବୁ ଉଠି ଛିଡ଼ାହେଲେ । ପକେଟରୁ ଗୋଟା ପଚାଶ ହେବ ଟଙ୍କା କାଢ଼ି ଥାକ ଥାକ କରି ଥୋଇଦେଲେ । ନରୁବାବୁ ପଚାରିଲେ—''ଏ କି ଟଙ୍କା ?''

ନଟବରବାବୁ—''ରଖିଥାଅ, ଏଇଟା ତୁମର ପକେଟ ମନି ।''

ନରୁବାବୁ କହିଲେ—''ମଉସା ତ ସବୁ ଖର୍ଚ୍ଚ ଦେଉଛନ୍ତି, ଆଉ ଟଙ୍କା କ'ଣ ହେବ ?''

ମାମୁଁ—''ନାହିଁ ନାହିଁ ପଡ଼ିଗଲା ଦଶ ଟଙ୍କା ଖରଚ—କ୍ୟାଁ ବନ୍ଧୁଲୋକଙ୍କୁ ମୁହଁ ହରାଇବ ।'' ବହୁତ ଆଦର କରି ବହୁତ ଗେହ୍ଲାକରି ନରୁବାବୁଙ୍କ ମୁଣ୍ଡରେ ପିଠିରେ ହାତ ବୁଲାଉଥା'ନ୍ତି । ମାମୁଁ କହିଲେ—''ମୁଁ ଆଜି ନରିପୁର ଯିବି । ମା'ଙ୍କୁ ଓ ଝେଙ୍କୀମା'ଙ୍କୁ କ'ଣ କହିବି ? ସବୁତ ଦେଖିଶୁଣିଗଲି । ବସ ବାବା, ବସ, ପଢ଼ ପଢ଼ ।'' ଏହା କହି ଓହ୍ଲାଇପଡ଼ି ବାହାରିଗଲେ । ଦୁଷ୍ଟ କରୁଣାଟା ଲୁଚିବା ଜାଗାରୁ ବାହାରିପଡ଼ିଲା—ଦୁଇଜଣ ଟିକିଏ ହସାହସି ହେଲେ ।

ନାଜରବାବୁ ଚାରିଦିନର ଛୁଟି ନେଇ ସବାରି କଷିଦେଲେ । କାଉ କାକରିବାବେଳେ ନରିପୁର ଉଆସ ସିଂହଦ୍ୱାରରେ ହାଜର । ସଳଖେ ସଳଖେ ଉଆସ ଭିତରକୁ ବାହାରିଲେ । ଯୋଡ଼ାଏ ଜଗୁଆଳ ପାଇକ ରୋକିଦେଲେ—''କିଏ ହେ ବାବୁ ! ଛିଡ଼ାହୁଅ, ଯିବାକୁ ବାସନ୍ଦ ।'' ବାବୁ କହିଲେ, ''ଆରେ ତଫାତ୍ ହୁଅ, ଆମେ ଉଆସ ଭିତରକୁ ଯିବୁ ।'' ପାଇକ କହିଲେ—''ଆରେ ରଖ ତୁମ ତଫାତ୍, ଛିଡ଼ା ହୁଅ ।''

ପେଟରେ ନିଆଁ ଭର୍ତ୍ତି—ମିଛଟାରେ ହସିଦେଇ ବାବୁ କହିଲେ, ''ମୁଁ ଟିକିଏ ପରଖୁଥିଲି, ଠିକ୍ କାମ ଅଞ୍ଜାମ କରୁଛ କି ନା । ଯା—ଧାଈମା'ଙ୍କୁ ଆଉ ଚାନ୍ଦମଣିକୁ ଖବର ଦିଅ, ଆମେ ଆସିଛୁଁ ।'' ହାକିମ କ'ଣ ଚାକରମାନଙ୍କ ଆଗରେ ଆପଣାର ନାମ କହିବେ—ଏଇମିତି ଚିହ୍ନାଦେଲେ ।

ପାଇକମାନେ କହିଲେ—''ଏଇଠାରେ ବିଜେହେଉନ୍ତୁ । ପଢ଼ିଆରୀ ଅଇଲେ ଭିତରକୁ ଖବର ଦେବୁ ।'' ଉଆସ ଭିତରୁ ପଢ଼ିଆରୀ ଆସି ବାବୁଙ୍କୁ ଡାକି ଘେନିଯିବାକୁ କିଛି ସମୟ ଡେରି ହେଲା । ତୁଚ୍ଛ ପାଇକ ହାତରେ ଅପମାନ ପାଇ ବାବୁ ତାତିରହିଛନ୍ତି ।

ନାଜରବାବୁ ଛାମୁ ଦୁଆରବନ୍ଧ ପାଖରୁ ପାଟିକରି ଡାକପକାଇ ଚାଲିଛନ୍ତି—''ଧାଈମା', ଧାଈମା', ଆରେ ଚାନ୍ଦମଣି !''

ଧାଈମା'—''ଆରେ ନଟ ! ଆସ ଆସ । କେତେବେଳେ ଅଇଲୁରେ ?''

ବାବୁ ଦଣ୍ଡବତଟାଏ କଲେ । ଡେବିରି ହାତରେ ଟଙ୍କା ଥଳିଟା ଧରିଥିଲେ, ଝମ୍‌କରି କଚାଡ଼ିଦେଲେ । ''ଓହୋ ! ଧାଈମା' ! ଖାଲି କିଲ୍ଲା କାମରେ ଲାଗିଛି—ଦିନ ନାହିଁ, ରାତି ନାହିଁ । କ'ଣ କହିବି ଧାଈମା', କିଲ୍ଲାର ହିସାବପତ୍ର ବୁଝାବୁଝି କରିବାକୁ ଯାଇ ଦେଖେ, ସେ ପାଞ୍ଜିବିଡ଼ା ନା ପୋଆଳବିଡ଼ା । ସବୁ ଚୋର ଏକ ଜାଗାରେ ରୁଣ୍ଡହୋଇଥିଲେ । ସେହି ଚୋରଗୁଡ଼ାଙ୍କୁ ବାହାରକଲି । ମଜଭୁଦ୍ ଲୋକ ଆଣିବାରୁ କାମ ଚଳିଲା । ପୁରୁଣା ପାଞ୍ଜି ଫିଟାଇ ଦେଖେ ଯେ, ପ୍ରଜାଙ୍କ ପାଖରୁ ଟଙ୍କା ନେଇଛନ୍ତି ତ ହିସାବରେ ଆଦାୟ ନାହିଁ ।''

ଧାଈମା' ହସିଉଠି କହିଲେ, ''ଆଚ୍ଛା ପାଞ୍ଜିଆ ତ !''

ନଟବର—''ଛୁଟକୁରିଆ ହାତ ଓଧାରି କରଜ ଏତେ ଥିଲା ! ସା'ନ୍ତ ଥରେ କଟକ ଯିବେ ତ, ଦି'ହଜାର କି ତିନିହଜାର ଟଙ୍କା କରଜକରି ଆଣିବେ, ତୁଚ୍ଛା ହେଣ୍ଡ୍‌ନୋଟ୍ ।''

ଧାଈମା'—''ନାଁରେ ନଟ—ଜୁଆଇଁବାବୁ ତ କଟକ ଯିବାବେଳେ ମୁଁ ତହବିଲରୁ ଟଙ୍କା କାଢ଼ି ଦିଏ । ଆଉ ବାହୁଡ଼ା ବିଜେ କରି ଖରଚର ହିସାବ ମତେ ବୁଝାଇଦିଅନ୍ତି । ସବୁ ହିସାବ ତ ମୋ ହାତରେ, କରଜ ଟଙ୍କା ଜମା ତ କାହିଁ ଦେଖେ ନାହିଁ ।''

ନଟବରବାବୁ—''ଏ ଧାଈମା' ! ମୁଁ କୋଡ଼ିଏ ଖଣ୍ଡ ହେଣ୍ଡ୍‌ନୋଟ୍ ଗଣି କଚେରି ଫିତାରେ ବାନ୍ଧି ରଖିଛି—ମହାଜନମାନେ ଟଙ୍କା ଅସୁଲି ଲେଖି ହେଣ୍ଡ୍‌ନୋଟ୍ ପିଠିରେ ଦସ୍ତଖତ କରିଦେଇଛନ୍ତି ।''

ଧାଈମା' କଥାଗୁଡ଼ାକ ଶୁଣି ଦିକ୍‌ଦାର ହେଲେଣି । କହିଲେ, ''ଆରେ ବାବୁ ନଟ ! କାଲି ରାତିରେ ତ ଖାଇନଥିବୁ, ଯାଆ ଯାଆ, ଜଲ୍‌ଦି ଗାଧୋଇ ଆସ । ଏ ପଢ଼ିଆରୀ ବାବୁଙ୍କୁ ବେଣ୍ଟପୋଖରୀକୁ ସାଙ୍ଗରେ ଘେନି ଯା'ତ ।''

X X X X

ସନ୍ଧ୍ୟା ସମୟ । ନାଜରବାବୁ ଯୁଗଳକିଶୋରଙ୍କ ବାହାର ମେଲାରେ କଚେରି କରି ବସିଛନ୍ତି । ତାଙ୍କ ନିଜର ପାଞ୍ଜିଆ ପାଇକଛଡ଼ା ଆଉ ବାହାର ଲୋକ ନାହିଁ । ବାବୁ ତୁନି ତୁନି ଉପଦେଶ ଦେଲେ, ''ଏବେ ମାସ କେତେ ଖୁବ୍ ସାବଧାନରେ କର୍ମ କରିବ । ପ୍ରଜାଙ୍କୁ ବିଗାଡ଼ିବ ନାହିଁ ।'' ଇସାରା ଦେଖାଇ କହିଲେ, ଅଳ୍ପଦିନ ବାଦେ ସେ ପୂରା ଅଧିକାର ପାଇବେ ।

ବାବୁ ଦୁଇଦିନ ଗଡ଼ରେ ଥିଲେ । କ'ଣ କେଜାଣି ତାଙ୍କୁ କିଛି କଥା ସୁଖ ଲାଗୁନାହିଁ । ହେଲେ, ଆଶା ପିଶାଚୀଟା ଯେମନ୍ତ ଆସି କାନରେ କହିଦେଉଛି—ଚିନ୍ତା କ'ଣ, ଲାଗିପଡ଼, ମାଲିକ ହେବୁ ।

## ଗୁଡ୍ ଫ୍ରାଇଡେ ଛୁଟି

ଗୁଡ୍ ଫ୍ରାଇଡେ ସକାଶେ ଶୁକ୍ର, ଶନି, ରବି, ସୋମ ଚାରିଦିନ କଚେରି ବନ୍ଦ । ହେଲେ କ'ଣ ଗୋଟାଏ କାମରେ ନାଜରବାବୁ ଦିନରାତି ଲାଗିଛନ୍ତି । ଭଗତ ଶୁଣ୍ଢି ମହାଜନ ସଙ୍ଗରେ ସବୁବେଳେ ପରାମର୍ଶ । କଟକରେ ଟଙ୍କା କରଜଦିଆ ଯେତେ

ମହାଜନ, ସମସ୍ତଙ୍କ ପାଖକୁ ଯିବାଆସିବା । ହାତଉଧାରି, ହେଣ୍ଡ୍‌ନୋଟ୍ ଲେଖି, ରେଜିଷ୍ଟରୀ ତମସୁକ ଲେଖି ଟଙ୍କା କରଜ କରିବାର ବନ୍ଦୋବସ୍ତ କରୁଛନ୍ତି ।

କଚେରିରେ ଲୋଡ଼ା ସକାଶେ ଦୋକାନରୁ ଜିନିଷ କାଲିରେ ଆସେ । ପଛରେ ବିଲ୍ ହେଲେ ଦୋକାନୀମାନେ ଟଙ୍କା ଘେନିଯା'ନ୍ତି । ଏଥିରେ ତାଙ୍କର ଫାଏଦା ରହିଥାଏ । ଆଜକୁ ଦେଢ଼ମାସ ହେଲା ଦୋକାନୀମାନଙ୍କୁ ଟଙ୍କା ମିଳୁନାହିଁ । କେତେଜଣ ଛୁଟକୁରିଆ ଦୋକାନୀ ବାଟ ଚାଲି ଚାଲି ଦିକ୍‌ଦାର ହୋଇଗଲେଣି । ବାରମ୍ବାର ମାଗିବାରୁ ବାବୁ ରାଗି ବି ଗଲେଣି । ଏ କ'ଣରେ ବାପା, 'ବଡ଼ଲୋକକୁ ଦିଅ ଧାର, ଯାଉଣୁ ଆସୁଣୁ ନମସ୍କାର ।' ଆଉ କ'ଣ ନା— 'ଦିଅ କାଲି, ଖାଅ ଗାଳି ।'

ଆଜି ଶନିବାର, ନାଜରବାବୁଙ୍କ ବସା କଚେରି ଭାରି ଜାରି । ଠିକ୍ ଏତିକିବେଳେ ମଫସଲି ଅସୁଲି ଟଙ୍କା ଧରି ଚାରିଜଣ ପିଆଦା ହାଜର । ନାଜରବାବୁ ତାତିଗଲେଣି— କହିଲେ, ''ମୁଁ କାହାର ବୋପାର ଚାକର ଯେ ଏପରି କାମ କରୁଥିବି !'' ପିଆଦାମାନଙ୍କୁ ଅନାଇ କହିଲେ, ''ଆଣ ଆଣ, ଟଙ୍କା ଆଣ ।'' ବାବୁ ଜଣଜଣକର ଟଙ୍କା ଗଣି ମିଶାଇଦେଉଥା'ନ୍ତି । ଶେଷକୁ ଥିଲା ଖୋଦାବକ୍‌ସ । ବାବୁ ଟଙ୍କା ଗଣିବସିଲେ । ଖୋଦାବକ୍‌ସ ଅନାଇଥାଏ । ମନରେ କଲା—''ଏଟା କିଭଳି ଟଙ୍କା ଗଣା-ଦୁଇ ତିନିଟା ଟଙ୍କାକୁ ଗୋଟାଏ ବୋଲି ଗଣିଯାଉଛନ୍ତି । ଆଉ ସମସ୍ତଙ୍କର ତ ଏପରି ଗଣିନାହାନ୍ତି ?''

ବାବୁ ଟଙ୍କା ଗଣିସାରି ସାଙ୍ଗେସାଙ୍ଗେ ଅନ୍ୟ ଟଙ୍କା ସାଙ୍ଗରେ ମିଶାଇଦେଲେ । ପଚାରିଲେ, ''ତୁ କେତେ ଟଙ୍କା ଆଣିଥିଲୁ ?''

ଖୋଦାବକ୍‌ସ—''ହଜୁର୍ ! ଶହେ ଏକୋଇଶ ଟଙ୍କା ଆଠଣା ।''

ବାବୁ—''ଏହିତ ତୋ ଆଗରେ ଶହେ ଟଙ୍କା ଗଣି ନେଲି, ଦେଢ଼ ଟଙ୍କା ପଡ଼ିଛି । ଆଉ କୋଡ଼ିଏ ଟଙ୍କା କାହିଁ ?''

ଖୋଦାବକ୍‌ସ ଡାକପକାଇଥାଏ, ''ହଜୁର ! ଆଉ ଥରେ ଗଣନ୍ତୁ ।'' ବାବୁ ଖପ୍‌ପାଟାଏ ହୋଇ କହିଲେ, ''ରୋଜ ହଜାର ହଜାର ଗଣୁଛୁ, ଦିନେ ଗୋଟାଏ ଭୁଲ୍ ନାହିଁ । ତୋର କୋଡ଼ିଏ ଟଙ୍କା ଭୁଲ୍ କଲି ? ତୁ ସରକାରୀ ଟଙ୍କା ତୋସରଫ କରିଛୁ, ବରଖାସ୍ତ ତ ହେବୁ, ପୁଣି ସଜା ପାଇବୁ—ଭଲ ଲୋଡୁ ତ କୋଡ଼ିଏ ଟଙ୍କା ଦାଖଲ କର ।''

ଅସୁଲ ଟଙ୍କା ପାଞ୍ଚହଜାର ହେବ, ତିନିଟା ଥଳିରେ ପୂରାଇ ସୁତୁଲି ଦଉଡ଼ିରେ ମୁହଁ ବାନ୍ଧିଦେଲେ । ପ୍ରଭୁଦୟାଲ 'ହଜୁର ହଜୁର' କହି ପାଖରେ ଛିଡ଼ାହୋଇଗଲା । ହୁକୁମ

ପାଇ ଏକାବେଳକେ ଦୁଇଟା ଥଳି ଢ଼େବିରି କାଖରେ ଆଉ ଗୋଟାଏ ଥଳି ଖାଇବା ହାତରେ ଧରି ବାବୁଙ୍କ ପଛେ ପଛେ ଚାଲିଲା । ବାବୁଙ୍କ ପହଡ଼ ଘର ଦୁଆରେ ଝମ୍‌କରି ଥୋଇଦେଇ ରୋଟି ଥାପୁଡ଼ିଲାପରି ଦୁଇ ହାତ ଝାଡ଼ିଦେଇ ଝଟ୍ ବାହାରିଆସିଲା । ଚିତ୍ରା ତେତେବେଳେ ବାହାରେ ପାଇଟି କରୁଥିଲା । ବାବୁଙ୍କ ଟଙ୍କାରଖାଟା ଟେରେଇ ଟେରେଇ ଦେଖୁଥାଏ । ଆଉତ କେବେ ଦେଖେନାହିଁ, ଆଜି ଏତେ ମନ ଦେଇ କ'ଣ ଦେଖୁଛି ?

## ବଙ୍ଗଳା ଖରିଦ

କଟକ ତୁଳସୀପୁର ପଶ୍ଚିମପଟିଆ ଲଗାଲଗି ଗୋଟାଏ ଛପର ଛାଉଣୀ ବଙ୍ଗଳା ଅଛି । ତା'ର ମାଲିକ ଶିଉଶରଣ ଭଗତ । ବଙ୍ଗଳାଟା ତୁଚ୍ଛା ପଡ଼ିପଡ଼ି ଧୀରେଧୀରେ ଭାଙ୍ଗିଯିବାକୁବସିଛି । ପ୍ରଭୁଦୟାଲ ଭଗତକୁ ଏକଥା ଜଣା । ଦିନେ ସକାଳେ ଦେଖାଗଲା ବଙ୍ଗଳାଟାରେ ଦଶ ପନ୍ଦର ଜଣ ମୂଲିଆ କାମରେ ଲାଗିଛନ୍ତି । ମୂଲିଆମାନେ ଟୋକେଇ ଧରି ଗୋବର ସଫା କରୁଛନ୍ତି । ଚାଳରୁ ଚେମେଣି ତଡୁଛନ୍ତି । କେତେଟା କବାଟ ଝିଡ଼ିକି ତଳେ ପଡ଼ିଯାଇଥିଲା—ବଢ଼େଇ ସେଗୁଡ଼ାକ ଛିଡ଼ା କରାଇବାକୁ ଲାଗିଛି । ବାବୁ ଡାକିଦେଲେ, ''ଆରେ ମହାରଣା, ତୁଚ୍ଛା କଣ୍ଟା ବାଡ଼େଇଦେ'ମ ! ଆରେ ରାଜମିସ୍ତ୍ରୀ ! ଖାଲି ମଝି କାମରାଟାରେ ଭଲକରି କଲି ଦେ'—ଆଗ ଦୁଆରଟାରେ ଟିକିଏ ଲଗା, ଆଉ ସବୁଆଡ଼େ ପୋଚରା ବୁଲେଇଆଣ ।''

ଏତିକିବେଳେ ଗୋଟାଏ ଶଗଡ଼ରେ ଲଦାହୋଇ କୁଣ୍ଡ ସହିତ କ୍ରୋଟନ୍ ଗଛ, ଚାରିଟା ଗୋଲାପଗଛ ପହଞ୍ଚିଗଲା । ବାବୁ ଆଗ ବାରନ୍ଦାରେ ସଜାଇ ରଖିଦେଲେ । ସଞ୍ଜସରିକି ସବୁ କାମ ଛିଣ୍ଡିଲା—ଘର ସଜାସଜି ଆରମ୍ଭ ହେଲା । ଚାରିଟା ଚୌକି, ଗୋଟାଏ ମେଜ ଆଗରୁ ସତରଞ୍ଜି ଉପରେ ଥୁଆ ହୋଇଛି । ରାତି ପହରକ ସମୟରେ ଦୁଇ ଦୋସ୍ତ ଖଣ୍ଡେ ଥାର୍ଡକ୍ଲାସ୍ ଗାଡ଼ିରେ ଚଢ଼ି ପହଞ୍ଚିଗଲେ । ଦୁଇ ଦୋସ୍ତଙ୍କ ବସିବାପାଇଁ ଯୋଡ଼ାଏ ଚୌକି ଥୁଆ ହୋଇଥିଲା । ବାବୁ ବସିପଡ଼ି ଉପରକୁ ଅନାଇ ଆଲୁଅକୁ ଦେଖୁଛନ୍ତି । ଝାଡ଼ଟା ଦେଖି ମୋହିତ ହୋଇଗଲେଣି । ନାଟୁଣୀମାନଙ୍କୁ ଦେଖି ଅନାଇ ରହିଛନ୍ତି—ଏମାନେ କିମିତିକା ଲୁଗା ପିନ୍ଧିଛନ୍ତି ? ଏଗୁଡ଼ାକ କ'ଣ ସୁନାରୁପାର ଲୁଗା ? ଏତିକିବେଳେ ଆପଣା ପୋଷାକପିନ୍ଧା ଦେହକୁ ଅନାଇଲେ । ମନରେ କଲେ ଅପା ହେଲେ ରାଣୀ, ସେ ବି ଜଣେ ବଡ଼ଲୋକ ହୋଇଗଲେଣି ।

ଏହି ସମୟରେ ଦୋସ୍ତ ବିଲାତି ପାଣି ଗ୍ଲାସ୍ ଦୁଇଥର ପହଞ୍ଚାଇଦେଲେଣି । ଅଧ ଶିଶି ଲାଭେଣ୍ଡର ଜଳ ବାବୁଙ୍କ ମୁଣ୍ଡରେ ଢଳାହେଲା । ଏତିକିବେଳେ ସାରଙ୍ଗି ବାଜିଉଠିଲା । ନାଚୁଣୀ ଯୋଡ଼ିକ ନାଚିଲେ । ପାଖ ଘରେ ଭଙ୍ଗା ଟେବୁଲ ଉପରେ ଚିନା ବାସନରେ ଖାନା ସଜା ହୋଇଥିଲା । ପ୍ରଭୁଦୟାଳ ଦୋସ୍ତଙ୍କ ହାତଧରି ଘେନିଗଲେ । ରାଘବର କେଉଁ ପୁରୁଷରେ କେହି ପଲାଉ ନାମ ଶୁଣିନଥିବେ— ତା'ପାଖରେ ଥାଳିଏ ମାଂସତିଅଣ, ପୁରି, ଛେନାବଡ଼ା ସଜା । ସେ ସବୁ ଜିନିଷ କୁକୁରପରି ଗାବୁଲ ଗାବୁଲ ହାଣ୍ଡିଟାଏ ଟେକିଦେଲେ । ଦୋସ୍ତ ରଙ୍ଗପାଣି ଗ୍ଲାସେ ଗ୍ଲାସେ ହାତକୁ ବଢ଼ାଇଦେଉଥା'ନ୍ତି । ବାବୁ ଆଉ ବସିପାରିଲେ ନାହିଁ । ଠିଆହୋଇ ନାଚିବାକୁ ଲାଗିଲେ । ବାବୁଙ୍କ ପିନ୍ଧିବା ଲୁଗାରେ ଠିକଣା ନାହିଁ । ନାଚୁଣୀ ଯୋଡ଼ାକ ଲାଜରେ ପଳାଇଗଲେ । ନାଚୁ ନାଚୁ ବାବୁ ହାଣ୍ଡିଏ ବାନ୍ତିକରି ପଡ଼ିଯାଇ ବେହୋସ୍ । ପ୍ରଭୁଦୟାଳ ଘୋଷରାଘୋଷରି କରି ନେଇ ଖଣ୍ଡେ ଭଙ୍ଗା ଖଟ ଉପରେ ଶୁଆଇଦେଲେ ।

ରାତି ପାହି ଆଠଟା ବାଜିଲାଣି । ବାବୁଙ୍କ ନିଦ ଭାଙ୍ଗିଲାଣି, ମୁଣ୍ଡ ଘୂରାଉଛି, ବାନ୍ତିମାଡୁଛି । ଇସାରା ପାଇ ଆପୁଡୁ ଗିନାଏ ରାଶି ମାଲପା ଆଣି ବାବୁଙ୍କ ମୁଣ୍ଡରେ ଘଷିବାକୁ ଲାଗିଲା । ଆପୁଡୁ ଦୁଇ ଚାରି ମାଠିଆ ପାଣି ମୁଣ୍ଡରେ ଢାଳିବାରୁ ବାବୁ ଆପେ ଯାଇ ପୋଖରୀରେ ଗୋଧୋଇକରି ଅଇଲେ । ଶୁଖିଲା ପୁରି, ବାସି ପଲାଉ, ମାଉଁସ ଅଧହାଣ୍ଡିଏ ଟେକିଦେଇ ଟୁକୁଣାଏ ପାଣି ପିଇଲେ ।

ବାବୁ ପଚାରିଲେ, ''ଦୋସ୍ତ ! ଏ ପକାଘର କାହାର ?''

ପ୍ରଭୁଦୟାଳ—''ଜଣେ ଦୋସ୍ତର ଘର । କହୁଥିଲେ ଏ ଘରଟା ବିକିଦେବ । ଆପଣ କିଣିପକାନ୍ତୁ । ଏହାର ଦାମ୍ କୋଡ଼ିଏ ହଜାର ଟଙ୍କା । ମାତ୍ର ମୁଁ ଶସ୍ତାରେ କରାଇଦେବି ।''

ବାବୁ କହିଲେ—''ଏତେ ଟଙ୍କା କାହୁଁ ପାଇବି ?''

ପ୍ରଭୁଦୟାଳ—''ଆପଣଙ୍କର ପୁଣି ଟଙ୍କାର ଅଭାବ ? ଆପଣଙ୍କ ଅପା ରାଣୀ, ମୁଁ ଟଙ୍କା ସଜିଲ କରିଦେବି ।''

ବାବୁ ହୁକୁମ ଦେଲେ—''ହଁ, ଆମେ ଘର କିଣିବୁ, ଆଜି କିଣନ୍ତୁ । ଡାକ ଡାକ ଦୋସ୍ତ, ଘରବାଲାକୁ—ବିକିଦେଇ ଯାଉ ।''

ଚଲାଖ ପ୍ରଭୁଦୟାଳ ଆପୁଡୁକୁ ତୁନିତୁନି ଢେର୍ ବେଳଯାଏଁ ଉପଦେଶ ଦେଲା । ବିଶେଷକରି କହିଦେଲା ଯେ, ଧୋବାଘରୁ ଭଲ ପୋଷାକ ଉଡ଼ାଆଣିବ ।

ଉପରଓଳି ଚାରିଟା ବାଜିଯାଇଛି, ବଙ୍ଗଳା ମାଲିକ ବାବୁ ଆଉ ଜଣେ ଓକିଲ ହାଜର ହେଲେ । ଏହି ଓକିଲବାବୁଟି ନିଶ୍ଚୟ ଗଲା ରାତିର ଖୋଦାବକ୍ସ ଖାନ୍‌ସାମା—ଆଉ କୋଠି ମାଲିକ ହେଉଚି ଡବଲଚି ଭଡ୍ଡୁଆ ଟୋକା । ମଜଲିସ୍ ବସିଲା—ଆପୁତ୍ରୁ ବୋତଲ ଗ୍ଲାସ୍ ଧରି ହାଜର ଅଛି ।

ବଙ୍ଗଳା କିଣାବିକା କଥା ପଡ଼ିଲା । ଦୋସ୍ତ ପ୍ରଭୁଦୟାଲ ବାବୁଙ୍କ ପଟ ଧରି ଖୁବ୍ ଲଢିଲଢି କରି ଦାମ୍ କମାଇଲେ । ଶେଷରେ ପାଞ୍ଚ ହଜାର ଟଙ୍କା ଦାମ୍ ଛିଣ୍ଡିଲା । ବାବୁଙ୍କ ମନରେ ଆନନ୍ଦ । ଓକିଲ ଲେଖାପଢ଼ା କରିପକାଇଲେ । ଓକିଲ ସେହି ଦଲିଲ ନେଇ ରେଜିଷ୍ଟରି କରିବାକୁ ଧାଇଁଲେ । ଘଣ୍ଟାକ ଉତ୍ତାରେ ଓକିଲ ବାବୁ ଫେରିଆସି ଦଲିଲ ଖଣ୍ଡ ବାବୁଙ୍କ ହାତକୁ ବଢ଼ାଇଦେଲେ । ବାବୁ ଏପିଠି ସେପିଠି ତିନିଥର ଓଲଟପାଲଟକରି ଦେଖି ଖୁସିଟାଏ ହେଲେ । ବଙ୍ଗଳାର ମାଲିକ ବାବୁ ରାମରାମ ଭଗତ ଟଙ୍କା ମାଗିଲେ । ସବୁ ଟଙ୍କା ନ ଘଟିଲେ ଦୁଇ ତିନି ହଜାର ଟଙ୍କା ଏବେ ଦିଅ । ରାଘବବାବୁ ଦୋସ୍ତ ମୁହଁକୁ ଅନାଇଲେ । ଦୋସ୍ତ ପ୍ରଭୁଦୟାଲ କହିପକାଇଲେ—''ଟଙ୍କା ଲାଗି କ'ଣ ପରବା ହେ ? ବାବୁ କାଲି ଟଙ୍କା ଫୋପାଡ଼ିଦେବେ । ନହେଲା ମୁଁ ପାଞ୍ଚ ହଜାର ଟଙ୍କା ଚଳାଇଦେବି ।''

ବଗି ହାଜର ଥିଲା—ଦୁଇ ଦୋସ୍ତ ସେଥିରେ ଚଢ଼ି ଘରକୁ ବାହାରିଗଲେ ।

## ପାପର ପରିଣାମ

ଆଜି ମଙ୍ଗଳବାର । ବାରଟା ବାଜିବା ସାଙ୍ଗେସାଙ୍ଗେ ମେଜେଷ୍ଟର ସାହେବ ମିସଲ୍‌ରେ ପହଞ୍ଚିଗଲେ । ସାହେବ ଆଗେ ବିଲାତି ଚିଠିଗୁଡ଼ାକ ପଢ଼ିପକାଇ ଏକପାଖିଆ କରି ରଖିଦେଲେ । ତହିଁ ଉତ୍ତାରେ ସରକାରୀ ଚିଠି ଏକ ଜାଗା କରି ଖଣ୍ଡିଏ ଖଣ୍ଡିଏ ଲଫାଫା ଚିରି ତହିଁ ଭିତରୁ ଚିଠି କାଢ଼ି ପଢୁଥା'ନ୍ତି । ଖଣ୍ଡିଏ ଚିଠି ପଢ଼ି ସାହେବ ଏକାବେଳକେ ନିଆଁବାଣ । ଭାରି ତେଜରେ ହୁକୁମ କଲେ, ''ଜଲ୍‌ଦି ସେ ଖାଜାନ୍‌ଚିକୁ ପକଡ଼ ଲାଓ ।''

ଗଭର୍ଣ୍ଣମେଣ୍ଟ ଚିଠି ଖଣ୍ଡ ଥାର୍ଡ଼ ରିମାଇଣ୍ଡର । କଟକ ଖଜଣାଖାନାରୁ ପାଞ୍ଚ ହଜାର ଟଙ୍କା କଲିକତା ଖଜଣାଖାନାକୁ ପଠାଯିବାର ହୁକୁମ ଥିଲା । ଖାଜାଞ୍ଚି ସଲାମ୍ କରି ଛିଡ଼ାହେବା ମାତ୍ରେ ସାହେବ ହୁକୁମ କଲେ—''କିସ୍ ବାସ୍ତେ କଲ୍‌କେଟା ରୂପାୟା ନେହିଁ ଗୟା ?''

ଖାଜାଞ୍ଚି—''ଥଳି ନଥିବାରୁ ଟଙ୍କା ପଠାଯାଇନାହିଁ । ଥଳି ଯୋଗାଇବା ନାଜରଙ୍କର କାମ ।''

ସାହେବ—''ବୋଲାଓ ରାସ୍କେଲ୍ ନାଜରକୁ ।''

ଚପରାସୀ କହିଲା—''ନାଜର କଚେରିକୁ ଆସିନାହାନ୍ତି ।''

ସାହେବ—''ପେସ୍କାର ! କିସ୍ ବାସ୍ତେ ନାଜର ନେହିଁ ଆୟା ?''

ପେସ୍କାର ପୀତାମ୍ବରବାବୁ ସାହେବଙ୍କ ରାଗ ଦେଖି ଚଞ୍ଚଳ କହିପକାଇଲେ—''ନାଜରଙ୍କ ଆସିବା ବେଳ ହୋଇନାହିଁ ।''

ସାହେବ ଗର୍ଜନ କରି କହିଲେ—''କ୍ୟା ଡାଇସନ୍ ସାହେବ ନେହିଁ ହେ—ଇସ୍ ବାସ୍ତେ ? ଜଲ୍‌ଦି ଯାଓ ଦୋଠୋ ଚପରାସୀ, ଜହାଁ ହେ ରାସ୍କେଲ୍‌କୋ କାନ୍ ପକଡ଼୍ କର୍ ଲେ ଲାଓ ।''

ଏଣେ କ'ଣ ହୋଇଛି ନା, ନାଜରବାବୁ ଚଞ୍ଚଳ ଚଞ୍ଚଳ କଚେରିକୁ ଯିବାପାଇଁ ସଜ ହେଲେ । ଢେର୍‌ଗୁଡ଼ାଏ ଟଙ୍କା ହାତରେ ଅଛି । ଚାଲାଣ ଲେଖି ଖଜଣାଖାନାରେ ଦାଖଲ କରିବାକୁ ହେବ । ବାବୁ ଘର ଭିତରକୁ ଯାଇ ସିନ୍ଦୁକ ଫିଟାଇଲେ । ଯାହା ଦେଖିଲେ ଦାଉଁକରି ଛାତି ଦୁଲକିଗଲା, ପାଟିରୁ କଥା ବାହାରିଲା ନାହିଁ । ଭୟରେ ଚିତ୍କାର କଲେ—''ଆଁ, ଟଙ୍କା କାହିଁ ?'' ବିଶାଖା ଦେଈ ଧାଇଁ ଅଇଲେ । ଭୟରେ ଦେହଟା ବରଡ଼ାପତ୍ର ପରି ଥରୁଚି । ମଙ୍ଗଳା ଦେଈ ମାଟି ପିତୁଳିଟି ପରି ଛିଡ଼ା । ଚିତ୍ରା ଭାରି କାନ୍ଦିପକାଉଛି ।

ସିନ୍ଦୁକରେ ଚାବି—ଟଙ୍କା ଗଲା କୁଆଡ଼େ ? ସମସ୍ତେ ଅଛନ୍ତି, ରାଘବ କାହିଁ ? ମଙ୍ଗଳା ଦେଈ କହିପକାଇଲେ, ''ସକାଳୁ ତ ଏଇଠି ବସିଥିଲା, ଟୋପାଏ ମାଲପା ଦେଲି, ଦେହରେ ବୋଳିହେଇ ନଈକୁ ଗାଧୋଇଗଲା ।'' ଯୋଡ଼ାଏ ତିନିଟା ପିଆଦା ଧାଇଁଲେ, କାଠଯୋଡ଼ିର ସବୁ ଘାଟ ତଲାସିଲେ । ନାଜରବାବୁ କଳାକାଠ ପଡ଼ିଗଲେଣି । ତଡ଼େଦମ୍ ଯୋଡ଼ାଏ ହଜୁରୀ ଚପରାସୀ ଦୁଆରେ ପହଞ୍ଚିଗଲେଣି । ଭାରି ପାଟିକରି ଡାକପକାଇଛନ୍ତି—''ନାଜରବାବୁ ! ଜଲଦି ଘର୍ ସେ ନିକଲ୍ ଆଓ, ହଜୁର୍‌କା ହୁକୁମ୍—ଜରୁର୍ ଆଓ ।'' ଟଙ୍କା ଖୋଜା, ରାଘବବାବୁର ତଲାସି, ସବୁ ବନ୍ଦ । ନାଜରବାବୁ ସବୁ ଛାଡ଼ି କଚେରି ଧାଇଁଛନ୍ତି ।

ହରିକାଠରେ ବୋଦା ବେକ ଗଳାଇଲା ପରି ନାଜରବାବୁ ସଲାମ କରି ମିସଲ ଆଗରେ ଛିଡ଼ାହୋଇ ଥରୁଛନ୍ତି । ସାହେବ ପଚାରିଲେ—''କ୍ୟାହେ ?''

ନାଜରବାବୁ ବୋଇଲେ—''ହଜୁର୍, ସରକାରୀ ପାଞ୍ଚ ହଜାର ଟଙ୍କା ମୋ ପାଖରେ ଥିଲା । ଗଲା କାଲି ରାତିରେ ମୋ ଘରୁ ଚୋରିଯାଇଛି ।''

ସାହେବ ଗର୍ଜନ କରି କହିଲେ—''କ୍ୟା, ସରକାରୀ ପାଞ୍ଚ ହଜାର ରୁପେୟା ତୋସରଫ ହୁଆ ? ଚପରାସୀ ! ପୋଲିସ୍ ସୁପରିଟେଣ୍ଡେଣ୍ଟ ସାହେବକୁ ସଲାମ୍ ଦୋ ।'' ଏତିକି କହି ସାହେବ ଖାସ୍ କାମରାକୁ ଉଠିଗଲେ ।

ବେଲବୁଡ଼ ଯାଏଁ ଦୁଇ ସାହେବ ଖାସ୍ କାମରାରେ କ'ଣ କଥାଭାଷା ହେଉଛନ୍ତି, କିପରି ଜଣାଯିବ ? ଉପରଓଳି ପୁଲିସ୍ ସାହେବ କୋର୍ଟ ଇନ୍‌ସପେକ୍ଟରକୁ ହୁକୁମ କଲେ, ''ନାଜରକୁ ନଜରବନ୍ଦିମେ ରଖୋ, କଚେରି ସେ ଯେସା ଯାନପାଏ ।''

ବେଳ ରତରତ । ସାହେବ ଆସି ବସିଲେ । ରାୟ ଲେଖି ହୁକୁମ କଲେ —''ନାଜର ନଟବର ଦାସକୁ ହାଜତକୁ ଲେଯାଓ ।'' ସାହେବଙ୍କ ମୁଖରୁ ହୁକୁମ ବାହାରିବା ମାତ୍ରେ ନାଜର ହାତରେ ହାତକଡ଼ି ପଡ଼ିଗଲା । ନାଜରକୁ ହାଜତକୁ ଘେନିଯିବାବେଳେ ହଜାର ହଜାର ଆଖି ଚାହିଁଛି । କେଉଁ ପିଆଦା କେତେ ଟଙ୍କା ଦାଖଲ କରିଛି ସେମାନଙ୍କଠାରୁ ଜବାନବନ୍ଦି ନିଆଯାଇଥିଲା ।

ଏଣେ ରାତି ପହରେ ହେଲାଣି, ନାଜରଙ୍କ ବସାରେ ସଞ୍ଜବଇଠା ଲାଗି ନାହିଁ । ମାଇକିନିଆ ଯୋଡ଼ାକ କାନ୍ଦିକାନ୍ଦି ହାଲିଆହୋଇପଡ଼ିଲେଣି । ଚିତ୍ରକଳା ସେମାନଙ୍କୁ ସାନ୍ତ୍ୱନାଦେଇ ବୁଝାଉଛି—ଚିନ୍ତାକରନା, ବାବୁ ଘରକୁ ଲେଉଟିଆସିବେ । ବଜାରରୁ କିଛି ଜଳଖିଆ ଆଣି ଖୁଆଇ ପାଣି ପିଆଇଲା ।

## ଖାନତଲାସି

ଖୁବ୍ ଭୋର୍—ବଜାରର ସବୁ ଦୋକାନର କବାଟ ଫିଟି ନାହିଁ । ଗୋଟାଏ ସାହେବ ଘୋଡ଼ା ଉପରେ, ତରବାରିଟାଏ ଅଣ୍ଟାରେ ବନ୍ଧା । ସାହେବ ଆଗପଛ ଗୁଡ଼ାଏ ଲାଲପାଗିଆ କନିଷ୍ଟବଳ ଧାଇଁଛନ୍ତି । ସାହେବଙ୍କ ଦଳ ନାଜର ନଟବର ଦାସଙ୍କ ଘରକୁ ବେଢ଼ିଗଲେ । ଥାନା ଦାରୋଗା କେତେଜଣ କନିଷ୍ଟବଳ ଧରି ସେଠାରେ ହାଜରଥିଲେ ।

ଚିତ୍ରା କହିଲା, ''ସାହେବଘର ସିପେଇଗୁଡ଼ାଏ ଅଇଲେଣି, ଗହଣାଗୁଡାକ ନେଇଯିବେ ସିନା ! ଦେହରେ ଲଗାଇପକାନ୍ତୁ, ରହିଯିବ ।'' ସା'ନ୍ତାଣୀ ଭକୁଆ ପରି ଅନାଇଛନ୍ତି । ବାହାରୁ ଦାରୋଗାବାବୁ ଥରକୁଥର ଡାକିଦେଉଛନ୍ତି—ତିର୍ଲୋଲୋକ ତଫାତ୍ । ଚିତ୍ରା ଦେଖିଲା, ଆଉ ବେଳନାହିଁ । ସା'ନ୍ତାଣୀଙ୍କ ଅଣ୍ଟି ଡୋର ରୁପା ଶିକୁଳିରୁ କଞ୍ଚି କାଠି ଗୋଛା ଫିଟାଇନେଇ ହାତବାକ୍ସଟା ଫିଟାଇପକାଇଲା । ପ୍ରତିମା ଦେହରେ ସାଜ ପିନ୍ଧାଇଲା ପରି ଚିତ୍ରା ସା'ନ୍ତାଣୀଙ୍କ ଦେହରେ ଗହଣାଗୁଡ଼ାକ ପିନ୍ଧାଇଦେଉଛି । କେଉଁ ଗହଣାଟା କେଉଁଠାରେ ପିନ୍ଧାଉଛି ଠିକ୍‌ଠିକଣା ନାହିଁ । କେଜାଣି ବିଦଟା ମୁଣ୍ଡ ଚଉଁରୀରେ ବାନ୍ଧିପକାଇଲା, ହାତମୁଦି ଗୋଡ଼ ଆଙ୍ଗୁଳିରେ, ଗୋଡ଼ ଝୁଣ୍ଟିଆ ହାତ ଆଙ୍ଗୁଳିରେ ପୂରାଇଦେଇଛି । ମାଇକିନିଆମାନେ ବାଡ଼ିପଟକୁ ଆଡ଼େଇଗଲେ ।

ଦାରୋଗା ଘର ଭିତରକୁ ପଶିଯାଇ ମାଲସବୁ କୋରକ ଆଉ ତାଲିକା କରିବାକୁ ଲାଗିଲେ । ମାଲ ଥାନାକୁ ଚାଲାଣ ଦେବାକୁ ସଞ୍ଜ ବାଜିଗଲା । ମାଇକିନିଆ ତିନିଟା ବାଡ଼ିରେ ପଡ଼ିଛନ୍ତି, ପଚାରୁଛି କିଏ ? କେହି ମୁହଁରେ ପାଣି ଦେଇନାହାନ୍ତି ।

ମାଲ କ୍ରୋକ୍ ଚାଲାଣ ଉତ୍ତାରେ ଟଙ୍କା ଚୋରିର ତଦାରଖ ଆରମ୍ଭ ହେଲା । କୌଣସି ରୂପେ ଚୋରି ଟଙ୍କାର କିନାରା ମିଳୁନାହିଁ । ଦାରୋଗାଙ୍କ ବୁଦ୍ଧି କୁଳାଉନାହିଁ । ସେ କହନ୍ତି, ଏପରି ଚୋରି ସେ କେବେ ତଦାରଖ କରିନାହାନ୍ତି, ଶୁଣା ବି ନାହିଁ । ଏବେ ଖାଲି ଖୋଜା ଚାଲିଲା ରାଘବ ମହାନ୍ତିକୁ । ରାତିରେ ଆସାମୀର ଠିକଣା ଲାଗିଲା ନାହିଁ । ପୁଲିସ୍‌ଗୁଡ଼ାକ ବି ଦିନଯାକ ଖାଡ଼ା ଉପାସ । ଖିଆପିଆ ଲାଗି ଘରକୁ ଚାଲିଗଲେଣି ।

ମାଇକିନିଆ ତିନିଟା ଘର ଭିତରକୁ ଅଇଲେ । ସବୁଆଡ଼େ ଅନ୍ଧାର । ପାରି ଶୋଇବାକୁ ଛିଣ୍ଡା ସପଖଣ୍ଡେ ବି ନାହିଁ । ମା'ଝିଅ ଯୋଡ଼ାକ ଭୋକରେ ଝୋଲାମାରିଗଲେଣି । ହେଲେ ଚିତ୍ରା ବିପଦରେ ଟଳିବାକୁ ନାହିଁ । ବଜାରକୁ ଧାଇଁଲା, କିଛି ମୁଢ଼ି ଉଖୁଡ଼ା କିଣିଆଣି ଦୁଇଜଣଙ୍କୁ ଖୁଆଇଲା । ପାଣି ପିଉଛନ୍ତି କାହିଁରେ ? ଆଞ୍ଜୁଳା ଆଞ୍ଜୁଳା କରି ପାଣି ପିଇଲେ ।

ଚିତ୍ରା କହିଲା—"ସା'ନ୍ତାଣୀ ! ଅନ୍ଧାରରେ ଚୋରଗୁଡ଼ାକ ଆପଣଙ୍କ ତଣ୍ଟି କାଟି ଗହଣାଗୁଡ଼ାକ ଘେନିଯିବେ । କାଢ଼ିପକାନ୍ତୁ, ରାତିରେ ଲୁଚାଇରଖିବା ।"

ସା'ନ୍ତାଣୀ—"ମୁଁ କେଉଁଠି ରଖିବି, ସିନ୍ଦୁକ ବାକ୍‌ସ ନାହିଁ, ତୁ ରଖିଦେ ।"

ଗୋଟାଏ କୋଣରେ ଭଙ୍ଗା ଟୋକେଇକୁଣ୍ଡେଇ ଜମାହୋଇଥିଲା । ସା'ନ୍ତାଣୀ ତା ଭିତରେ ଅଳଙ୍କାର ପୋଟଳୀଟା ଲୁଚାଇଦେଲେ । କହିଲେ, "ଚିତ୍ରା, ମୋ ପାଖରେ ଶୁଅ—ମୋତେ ବଡ଼ ଡର ଲାଗୁଚି ।"

ଚିତ୍ରକଳା କହିଲା—"ମୁଁ ଆପଣଙ୍କୁ ଅନାଇ ଜଗିବସିଚି । ଆପଣମାନେ ଶୁଅନ୍ତୁ ।" ଦଣ୍ଡକ ଉତ୍ତାରେ ମା' ଝିଅଙ୍କ ଘୁଙ୍ଗୁଡ଼ି ଶୁଭିଲା ।

## ଟଙ୍କା ବରାମଦ

ଭୋର-ଭୋର—ଦଶ ଜଣ କନିଷ୍ଟବଳ, ଦଶ ଜଣ ଚଉକିଆ ଧରି ଦାରୋଗା ନାଜରଙ୍କ ବସାରେ ପହଞ୍ଚିଲେ । ଆଉ କିଛି କଥା ନାହିଁ—କାହିଁ ରାଘବ ମହାନ୍ତି ? ଚାରିଆଡ଼କୁ କନିଷ୍ଟବଳ ଓ ଚଉକିଆ ଖେଦିଗଲେ । ବେଳ ୯ଟାରେ ଖବର ମିଳିଲା, ଆସାମୀ ତୁଳସୀପୁରର ଗୋଟାଏ ଭଙ୍ଗା ଦଦରା ବଙ୍ଗଳାରେ ପଡ଼ିଛି । ଗୋଇନ୍ଦା ଠିକ୍

ବଙ୍ଗଳା ଦୁଆରେ ପହଞ୍ଚାଇଦେଲା । କାଳିଆ ଭୂତପରି ଗୋଟାଏ ମଣିଷ ବଙ୍ଗଳା ଭିତରେ ପଡ଼ିଛି, ଘଡ୍‌ଘଡ୍ କରି ଘୁଙ୍ଗୁଡ଼ି ମାରୁଛି । ଘରଭିତରେ ମଦବୋତଲ, ପୋଡ଼ା ଗଞ୍ଜେଇ, ଗୁଡ଼ାଖୁଗୁଲ, ମାଉଁସ ପଲଉ ରନ୍ଧା ହାଣ୍ଡି ଗଡୁଛି । ବୁଦ୍ଧିଆ ଦାରୋଗାବାବୁ ଝଟ୍ ବୁଝିଗଲେ, କାଲି ରାତିରେ ଭାରି ଗୋଟାଏ ମୌଜ ହୋଇଯାଇଛି । ଲୋକଟାକୁ ଢେର୍ ଡକାଡକି ହେଲା, ଜବାବ ନାହିଁ । ସେକ୍ କାଦର କନିଷ୍ଟବଳ ଠେଙ୍ଗେଣିରେ ଦୁଇ ଚାରି ପାହାର ଚଢ଼ାଇଦେଲା । ତଥାପି ନିରୁତ୍ତର । ଆଉ ଦୁଇଟା ପାହାର ବାଜିବାରୁ ଖନେଇ ଖନେଇ କହିଲା, ''ଦୋସ୍ତ ! ଆଣ ମାଲ୍—ଗୀତ ଗା', ଗୀତ ଲଗା ।''

ଦାରୋଗା ହୁକୁମ କଲେ—''ଘେନିଚାଲ ପୋଖରୀ ଘାଟକୁ ।'' ଚାରିଜଣ ପାଣ ଟେକି ପୋଖରୀ ଘାଟକୁ ଘେନିଗଲେ । ଦେ ଢାଳ ମୁଣ୍ଡରେ ପାଣି । ଦଶ ମାଠିଆ ବେଳକୁ ଲୋକଟା ଉଠିବସିଲା ।

ଦାରୋଗା—''ଆରେ, ତୋ ନାମ କ'ଣ ?'' କିଛି ଉତ୍ତର ନାହିଁ । ''ଆରେ ! ତୁ ଯେ ନାଜର ବସାରୁ ଟଙ୍କା ଚୋରିକରି ଆଣିଲୁ— କ'ଣ କଲୁ ?'' ଲୋକଟାର ପାଟିରେ କଥା ନାହିଁ ।

ଭୀମ ସିଂହ କନିଷ୍ଟବଳ ଦୁମ୍‌କରି ପିଠିରେ ଗୋଟାଏ ଠେଙ୍ଗେଣି ବସାଇଦେଲା । ଲାଗ ଲାଗ ତିନି ଠେଙ୍ଗେଣି । ନିହାତି ଡରିମରି ଉତ୍ତରଦେଲା—''ରାଘବ ମହାନ୍ତି ।'' ସେ ଯେତେ ଯେତେ କଥା କହିଲା, ଦାରୋଗା ବାବୁ ସେଥିରୁ ସାର ସାର ବାଛି ଜମାନବନ୍ଦି ଏହିପରି ଲେଖିଲେ ।

''ମୋ ନାମ ରାଘବ ମହାନ୍ତି । ମୁଁ ନାଜରବାବୁଙ୍କ ଶଳା । ଦୋସ୍ତ ପ୍ରଭୁଦୟାଲ ଓ ଚିତ୍ରା କହିବାରୁ ମୁଁ ଟଙ୍କା ଚୋରାଇ ଆଣିଛି । ସିନ୍ଦୁକ ମୁହଁରୁ ମହଣରେ ଛାପ ଆଣି ଦେଲି । ଦୋସ୍ତ କଞ୍ଚିକାଠି ବନାଇ ଆଣି ଦେଲେ, ସିନ୍ଦୁକ ଫିଟାଇଲି । ତିନି ଥଳି ଟଙ୍କାରେ ବଙ୍ଗଳା କିଣାଗଲା । ତିନି ଆଞ୍ଜୁଳା ଟଙ୍କା ନେଲା ଚିତ୍ରା । କେତେଗୁଡ଼ିଏ ଟଙ୍କାର ଜିନିଷ କିଣାହୋଇ ଆସିଲା । ବାକି ଟଙ୍କା ମୋ ବିଛଣା ତଳେ ଅଛି । ଇତ୍ୟାଦି ।''

ବିଛଣା ତଳୁ ଟ ୩୬୨୪୲୬ ବାହାରିଲା । ପୁରୁଣା ଦୁଇଅଣିଆ ଷ୍ଟାମ୍ପ କାଗଜରେ ଲେଖା ଖଣ୍ଡିଏ କାଗଜ ମିଳିଲା । ଲେଖାର ଅର୍ଥ ବୁଝାଗଲାନାହିଁ । ଦାରୋଗା ହସିହସି କହିଲେ, ''ଓହୋ, ଏଇଟା କବଲା ପରା ମୁଁ ବୁଝିପାରିନଥିଲି'' । ଦାରୋଗା ବୁଝିଗଲେଣି, ଏ ଲୋକଟା ଘୋର ମୂର୍ଖ ।

ଚିତ୍ରା ଘର ଖାନତଲାସି ହେଲା, କିଛି ମାଲ୍ ବାହାରିଲା ନାହିଁ ।-ଘର ପଛ ପାଉଁଶଗଦାରୁ ପାଞ୍ଚଶ ଟଙ୍କା ଆଉ ଅଳଙ୍କାର ପୁଟୁଳା ବାହାରିଲା । ଚିତ୍ରା ଜବାବ

ଦେଲା—ଟଙ୍କା ଆଉ ଅଳଙ୍କାର କଥା ସେ କିଛି ଜାଣେନାହିଁ—କେହି ଦୁଷ୍‌ମନ୍ ପୋତିପକାଇ ଯାଇଛି । ଏ ଅଳଙ୍କାର କାହାର ସନାକ୍ତ କରାଇବାପାଇଁ ଦାରୋଗା ନାଜରଙ୍କ ସ୍ତ୍ରୀ ନିକଟକୁ ଦୁଇଜଣ ଭଦ୍ରଘର ସ୍ତ୍ରୀଲୋକ ପଠାଇଲେ । ସେମାନେ ନାଜର ଭାର୍ଯ୍ୟାଙ୍କ ନିକଟରେ ଉପସ୍ଥିତ ହୋଇ ଅଳଙ୍କାର ପୁଟୁଳା ଦେଖାଇ ପଚାରିଲେ, ''ଏ କାହାର ଅଳଙ୍କାର ?'' ବିଶାଖା ଦେଈ ଗତ ରାତିରେ ଯେଉଁଠାରେ ଅଳଙ୍କାର ଲୁଚାଇ ରଖିଥିଲେ ଦେଖିବାପାଇଁ ଧାଇଁଗଲେ, କିଛି ନାହିଁ । ମା-ଝିଅ ଦୁଇଜଣ ଡକାପକାଇ ଝାମପଡ଼ିଗଲେ ।

## ପେସ୍କାରଙ୍କ ଶଙ୍ଖୁଳା ଓ ପୁଲିସ୍ ରିପୋର୍ଟ

ଦିନଯାକ ଗଲା, ରାତି ଦଣ୍ଡେ ହୋଇଗଲାଣି । ସମସ୍ତଙ୍କ ଘରେ ଆଲୁଅ । ନାଜରବାବୁଙ୍କ ଘରଟା ଘୋର ଅନ୍ଧାର । ଦୁଇଟା ମାଇକିନିଆ ଅଚେତ ହୋଇ ପଡ଼ିଛନ୍ତି । ଗୋଟିଏ ସ୍ତ୍ରୀ ପାଚିଆଟିରେ ଜଳଖିଆ, ପାନ, ଦୁଇଖଣ୍ଡ ଲୁଗା ଧରିଛି । ଭଣ୍ଡାରି ବିଛଣା କାଖରେ ଜାକିଛି— ନାଜରବାବୁଙ୍କ ବସାରେ ପହଞ୍ଚିଗଲେ । ସବୁ ଦୁଆର ମେଲା । ସ୍ତ୍ରୀଟି ମାଇକିନିଆ ଦୁହିଁଙ୍କ ହାତଧରି ଉଠାଇ ବସାଇଲା । ଗୋଡ଼ ହାତ ମୁହଁ ଧୋଇଦେଇ ଲୁଗା ପାଲଟେଇଦେଲା । ବଳାଇ ବଳାଇ ଜଳଖିଆ ଖୁଆଇ ପାଣି ପିଆଇଲା, ଖଣ୍ଡେ ଖଣ୍ଡେ ବିଡ଼ିଆ ବଢ଼ାଇଦେଲା । ଭଣ୍ଡାରି ବିଛଣା ପାରି ରଖିଥିଲା— ମା'-ଝିଅ ଲଠକରି ଶୋଇପଡ଼ିଲେ । ମଙ୍ଗଳା ଦେଈ ପଚାରିଲେ, ''ତୁ ମା' କିଏ ?'' ସ୍ତ୍ରୀଟି କହିଲା, ''ଆମ ଦୁଇଜଣଙ୍କୁ ପେସ୍କାର ପୀତାମ୍ବରବାବୁ ଆଉ ଟିକାଇତବାବୁ ପଠାଇଛନ୍ତି— ଡରନାହିଁ— ଆମେ ପାଖେ ପାଖେ ଅଛୁ, ଶୋଇପଡ଼ ।''

କଥାଟା ରୁକୁଣାଦେଈପୁରରେ ଠୁକ କରି ପହଞ୍ଚିଗଲା । ଘରବୋହୂ—ଯା' ତା' ଘର ନୁହେଁ, କରଣଘର ମାମଲା, ମାନମହତକୁ ଜଗିବା ଲୋଡ଼ା । ନାଜରଙ୍କ ବଡ଼ଭାଇ ବାନାମ୍ବରବାବୁ ଧାଇଁଆସି ଶଗଡ଼ ଖଣ୍ଡକରେ ବସାଇ ସାନବୋହୂକୁ ଘରକୁ ଘେନିଗଲେ । ବୁଢ଼ୀକୁ ସାଙ୍ଗରେ ନେଲେ ନାହିଁ—କଟକରେ ଛାଡ଼ିଦେଇଗଲେ । ଶଗଡ଼ ଭିତରୁ ବିଶାଖା ଦେଈଙ୍କ କାନ୍ଦଣା ଦୁଇ କୋଶ ଯାଏ ଶୁଭୁଥାଏ— ଶୁଣୁଛି କିଏ ?

X X X X

କଟକ ଥାନାର ଦାରୋଗା ଏହି ମାମଲା ସମ୍ବନ୍ଧରେ ଶ୍ରୀଯୁକ୍ତ ମେଜେଷ୍ଟର ସାହେବଙ୍କ ନିକଟକୁ ଇଂରେଜୀରେ ଯେଉଁ ରିପୋର୍ଟ ପଠାଇଥିଲେ, ସେଥିର ସାରାଂଶ ଓଡ଼ିଆ ଭାଷାରେ ଏହିପରି—

ହଜୁରଙ୍କ ହୁକୁମ ଅନୁସାରେ ନାଜର ନଟବର ଦାସ ଘର ମାଲ କ୍ରୋକ ଏବଂ ଟଙ୍କା ଚୋରି ମାମଲା ତଦନ୍ତ କରି କ୍ରୋକ୍ ମାଲର ଏକ ପ୍ରସ୍ତ ନକଲ ରିପୋର୍ଟ ସହିତ ପଠାଇଲି । ଟଙ୍କା ଚୋରି ମାମଲା ହାଲ ଏହି କି—ଖୋଦାବକ୍ସ ରାମରାମ ସିଂହ, ଭୀମ ସିଂହ ନାଜରଖାନାର ପିଆଦାମାନଙ୍କ ଜମାନବନ୍ଦିରୁ ସାଫ୍ ସାବିତ, ସେମାନେ ମଫସଲରୁ ରୋଡ଼ସେସ ଓଗେର ବାବଦ ଟ ୪୭୯୮ ଅସୁଲ କରି ଆଣିଥିଲେ । କଚେରି ବନ୍ଦ ଥିବା ଯୋଗୁ ନାଜର ଜିମାରେ ସେ ଟଙ୍କା ସବୁ ରଖାଯାଇଥିଲା । ଚଳିତ ମଇ ମାସ ୨୨ ତାରିଖ ଶନିବାର ରାତ୍ରରେ ଟଙ୍କା ଚୋରି ଯାଇଥିବାର ଅନୁମାନ କରାଯାଏ । ନଂ ୧ ଆସାମୀ ରାଘବ ମହାନ୍ତି, ନଂ ୨ ଆସାମୀ ପ୍ରଭୁଦୟାଲ ଭଗତ, ନଂ ୩ ଆସାମୀ ଚିତ୍ରକଳା । ଏହି ତିନି ଜଣଙ୍କ ଯୋଗସାଜିରେ ଟଙ୍କା ଚୋରିହୋଇଥିବାର ଜଣାଯାଏ ।

ନଂ୧ ଆସାମୀ ରାଘବ ମହାନ୍ତି ନାଜରର ଶଳା, ଗୋଟାଏ ନିହାତି ବେକୁବ ମନ୍ଦଲୋକ ଅଟେ । ନଂ୨ ଆସାମୀ ଗୋଟାଏ ପକ୍‌କା ବଦ୍‌ମାସ୍ । ଏଥିପୂର୍ବେ ପୁଲିସ୍‌କୁ ପ୍ରତାରଣା କରିଥିବା ଅପରାଧରେ ଉକ୍ତ ଆସାମୀକୁ ଦୁଇ ଦଫା ଚାଲାଣ ଦେଇଥିଲେ, ପ୍ରମାଣ ଅଭାବରୁ ଖଲାସପାଇଅଛି । ନଂ୩ ଆସାମୀ ଗୋଟିଏ ଦୁଶ୍ଚରିତ୍ରା, ବଜାରର ସାମାନ୍ୟ ସ୍ତ୍ରୀ ଅଟେ ଏବଂ ନାଜର ନଟବର ଦାସର ଅନୁଗ୍ରହପାତ୍ରୀ । ଆଉ ନଂ୨ ଆସାମୀ ପ୍ରଭୁଦୟାଲର ମଧ ପ୍ରିୟପାତ୍ରୀ ଥିଲା । ବୁଦ୍ଧିମତୀ ଚିତ୍ରକଳା, ପ୍ରଭୁଦୟାଲ ଭଗତ ତାହାର ଧର୍ମଭାଇ, ଏହିପରି ପରିଚୟ ଦେଇ ନାଜରକୁ ଭୁଲାଇରଖିଥିଲା । ଚିତ୍ରକଳା ଦାସୀ ଭାବରେ ନାଜର ବସାକୁ ଯାତାୟାତ କରି ସମସ୍ତ ସନ୍ଧାନ ଅନ୍ୟ ଆସାମୀମାନଙ୍କୁ ଦେଇଥିଲା ।

ଚୋରିର ହାଲ ଏହିପରି ପ୍ରକାଶ ଯେ—ନଂ ୨ ଓ ନଂ ୩ ଆସାମୀମାନଙ୍କ ପରାମର୍ଶରେ ନଂ୧ ଆସାମୀ ସମସ୍ତ ସିନ୍ଦୁକର ଚାବିମୁହଁ ମହଣରେ ଛାଞ୍ଚ ଆଣିଦେବାରୁ ନଂ ୨ ଆସାମୀ ଚାବିକାଠି ବନାଇ ଆଣିଦେଲା । ନଂ ୧ ଆସାମୀ ଅନ୍ୟ ଦୁଇଜଣଙ୍କ ସହାୟତାରେ ନାଜରଙ୍କ ସିନ୍ଦୁକ ଫିଟାଇ ଟଙ୍କା ଚୋରି କରିଥିବାର ପ୍ରମାଣ ହେଉଛି ।

ମହାଜନ ଶିଉଶରଣ ଭଗତର ତୁଳସୀପୁର ମୁକାମରେ ଗୋଟାଏ ପୁରୁଣା ବଙ୍ଗଳା ଅଛି । ସେହି ବଙ୍ଗଳାଟା ନଂ ୧ ଆସାମୀକୁ କିଣାଇ ଦେବାକୁ ୩୦୦୦ ଟଙ୍କା ନଂ ୨ ଆସାମୀ ଜୁଆଚୋରି କରି ନେଇଅଛି । ଖଣ୍ଡେ ଦୁଇଅଣିଆ ଷିଠାମ କାଗଜରେ ଗୁଡ଼ିଏ ବାଜେ କଥା ଲେଖାଇ କବଲା ବୋଲି ନଂ ୧ ଆସାମୀକୁ ଦେଇଥିଲା । ନଂ ୧ ଆସାମୀ ନିତାନ୍ତ ମୂର୍ଖ ବେକୁବ ଥିବାରୁ କିଛି ବୁଝିପାରିନାହିଁ । ସେହି କାଗଜଖଣ୍ଡ ନଂ ୧ ଆସାମୀ

ବିଛଣା ତଳୁ ବରାମଦ ହୋଇଥିବାରୁ ହଜୁରଙ୍କ ମାଇନା ସକାଶେ ପଠାଇଲି । ନଂ ୩ ଆସାମୀ ଚିତ୍ରକଳା ଚୋରି ଟଙ୍କାରୁ ୫୦୦ ଟଙ୍କା ଭାଗପାଇଥିଲା । ସେହି ଟଙ୍କା ଏବଂ ନାଜର ଅନୁପସ୍ଥିତ ସମୟରେ ତାହା ସ୍ତ୍ରୀଠାରୁ ଅଳଙ୍କାର ଚୋରି କରି ନେଇଥିଲା—ଏ ସମସ୍ତ ଦ୍ରବ୍ୟ ତାହାଘର ପଛ ପାଉଁଶଗଦାରୁ ବରାମଦ ହୋଇଥିବାରୁ ସ୍ୱତନ୍ତ୍ର ତାଲିକା ମାଫିକେ ହଜୁରରେ ଦାଖଲ କଲି ।

ଏପରି ନଗଦ ଟ ୩୬୨୪୬ ନଂ ୧ ଆସାମୀର ବିଛଣାତଳେ ପଡ଼ିଥିଲା । ଅବଶିଷ୍ଟ ଟଙ୍କାରେ ଆସାମୀ ଦୁଇଜଣ ଏବଂ ଆଉ କେତେଜଣ ବଦମାସ୍ ଲୋକ ମାଦକ ଏବଂ ଖାଦ୍ୟଦ୍ରବ୍ୟ କିଣି ଆମୋଦ ପ୍ରମୋଦ କରିଥିବାର ଜଣାଯାଏ । ନଂ ୧ ରାଘବ ମହାନ୍ତି, ନଂ ୩ ଚିତ୍ରକଳା—ଆସାମୀମାନଙ୍କୁ ଚାଲାଣ ଦେଲି । ନଂ ୨ ଫେରାରୀ ଆସାମୀ ପ୍ରଭୁଦୟାଲ ଭଗତକୁ ଗ୍ରେପ୍ତାର କରିବା ସକାଶେ ହୁଲିଆଜାରି ପ୍ରାର୍ଥନା କରେ ।

୪ ତାରିଖ ମାହେ ଜୁନ୍ — ନୀଳମଣି ବଳବନ୍ତରା
ସନ ୧୮୭୧ ମସିହା — ଇ.ଇ. ସଦରଥାନା, କଟକ

## ବିଚାର

ଖରାଦିନିଆ ସକାଳ କଚେରି । ଜେଲ୍‌ଖାନା ଦୁଆର କଡିରୁ ସେସନ୍ ଜଜ୍ ଅଦାଲତଯାଏ ଦେଖଣାହାରି ଥାଟବାନ୍ଧି ଛିଡ଼ା । ଆଜି ନାଜର ନଟବର ଦାସର ମାମଲା । ଭୋର୍ ୭ଟା ସମୟରେ ସଙ୍ଗୀନଲଗା ବନ୍ଧୁକ କାନ୍ଧରେ ପକାଇ ଆଠଜଣ ପ୍ରହରୀ ଚାରିପାଖ ବେଢ଼ିଛନ୍ତି, ମଧ୍ୟରେ ତିନିଜଣ ଆସାମୀ । ଜଜ୍ ସାହେବଙ୍କ ମିସଲ ଆଗରେ ଧାଡ଼ି କରି ତିନିଜଣ ଆସାମୀଙ୍କୁ ଛିଡ଼ାକରାଗଲା । ପେସ୍କାର ହାକିମଙ୍କୁ ଜଣାଇଦେଲେ, ''ହଜୁର୍ ! ସରକାର ବାହାଦୁର ମୁଦେଇ, ନଂ ୧ ଆସାମୀ ନାଜର ନଟବର ଦାସ, ନଂ ୨ ଆସାମୀ ରାଘବାନନ୍ଦ ମହାନ୍ତି, ନଂ ୩ ଆସାମୀ ଚିତ୍ରକଳା ହାଜର ।''

ପ୍ରଥମ ସାକ୍ଷୀ ଦାରୋଗା ନୀଳମଣିବାବୁ କାଠ ଅର୍ଗଳା ମଧ୍ୟକୁ ପ୍ରବେଶ କରିବାମାତ୍ରେ ନାଜର ନଟବର ଦାସ ଖୁବ୍ ପାଟିଟାଏ କରି କହିଲା, ''ହଜୁର୍ ! ଆଗ ମୋ ଜମାନବନ୍ଦି ନିଅ ।'' ସେ ଏ ପ୍ରକାର ଚିତ୍କାର କଲା ଯେ ସାହେବ ତା'ର ଜମାନବନ୍ଦି ଗ୍ରହଣ ନ କରି କିଛି କାମ କରିପାରିଲେନାହିଁ । ନାଜରଙ୍କ କଥାରୁ ବାଛି ସାରକଥା ସଂଗ୍ରହ କରାଯାଇଛି ।

ନାଜର ନଟବର ଦାସଙ୍କ ଜବାନବନ୍ଦି—''ମୁଁ ସରକାରୀ ଟଙ୍କା ଚୋରି କରି ନାହିଁ—ସେ ମାମଲାରେ ମୁଁ ନିର୍ଦ୍ଦୋଷ । ମାତ୍ର ମୋ ଭଉଣୀ ଚାନ୍ଦମଣି ଅଚେତନ ଥିବାବେଳେ

ତାହାର ନାମ ଜାଲକରି ସରକାରକୁ ରିପୋର୍ଟ ଦେଇଛି । ମୁଁ ନରିପୁର ତାଲୁକର ଅଧିକାରୀ ହୋଇଛି । ଚାନ୍ଦମଣିର ଚାଳିଶ ପଞ୍ଚାଶ ହଜାର ଟଙ୍କାର ଅଳଙ୍କାର ଚୋରି କରି ଆଣିଛି । ଶହ ଶହ ପ୍ରଜାଙ୍କର ଜମି ଛଡ଼ାଇ ନେଇଛି । ପିଲାମାନଙ୍କ ତହବିଲରୁ ଅନେକ ଟଙ୍କା ଚୋରିକରିଛି । ନରିପୁର ଇଲାକାର ପେଶକସ୍ ଦାଖଲ ନ କରି ତାଲୁକଟା ନିଲାମରେ କିଣିନେବାକୁ ଇଚ୍ଛା ଥିଲା । ସେଥିପାଇଁ ନାନା ମନ୍ଦ ବାଟରେ ଲକ୍ଷେ ପର୍ଯ୍ୟନ୍ତ ଟଙ୍କା ସଂଗ୍ରହ କରି ଓ ଚାନ୍ଦମଣିର ଅଳଙ୍କାର ସବୁ ମୋ ଘରେ ଲୁହା ସିନ୍ଦୁକରେ ରଖିଛି । ସେ ସମସ୍ତ ଟଙ୍କା ଆଉ ମାଲ ନାବାଳକ ଦୁଇଗୋଟି ପିଲାଙ୍କର, ସେମାନଙ୍କୁ ଦିଆଯାଉ । ହୋ-ହୋ-ହୋ ! ମୁଁ ନରିପୁର ତାଲୁକର ରାଜା ! ଜଜ୍‌ସାହେବ ! ହାମ୍ କୋ ସଲାମ୍ କର୍—ହୋ—ହୋ'' ହସି ଆସାମୀ ତଳକୁ ଡେଇଁପଡ଼ିଲା । ଭୟଙ୍କର ଚିତ୍କାର, ନଚାକୁଦା—ମିସଲଟା ଭାଙ୍ଗିଦେବ ପରା ! ଚାରି ଛ' ଜଣ ସିପାହି ମାଡ଼ି ବସି ଡବଲ ହାତକଡ଼ି ଲଗାଇଦେଲେ । ଅଣ୍ଟାରେ ଡୋରିବାନ୍ଧି ଚାରିଜଣ ଭିଡ଼ିଧରିଥାନ୍ତି । ଆସାମୀକୁ ପାଗଳ ଗାରଦକୁ ପଠାଗଲା ।

ଦୋସରା ଆସାମୀ ରାଘବ ମହାନ୍ତିର ଜବାବ—ଆସାମୀଟା ସବୁ ସବାଲ ବୁଝି ପାରୁନାହିଁ—ବୁଝିଛି ତ, ଚାରିଟା କଥା ଯୋଡ଼ି ଯୋଡ଼ି କହିପାରୁନାହିଁ—ବେଳେବେଳେ ଗଧ ପରି ଭୋ-ଭୋ ଡକାପାଡୁଛି । ଅନେକ ପଚରାଉଚରା କରି ଜବାନବନ୍ଦି ଶେଷକରାଗଲା ।

ଚିତ୍ରକଳା ଜବାବ ଦେଲା—''ମୁଁ ଟଙ୍କା ଚୋରିକରିଛି—କିଏ ଦେଖିଛି ? ମୋ ଘରୁ ମାଲ ବାହାରିନାହିଁ—କେହି ଲୋକ ଦୁଷ୍‌ମନି କରି ମୋ ଘର ପଛରେ ରାତିରେ ରଖିଦେଇ ଯାଇଛି । ପ୍ରଭୁଦୟାଲ ଭଗତ ଆଉ ରାଘୋ ମହାନ୍ତି କିଏ ମୁଁ ଜାଣିନାହିଁ । ମୁଁ ଟଙ୍କା ଚୋରି କରିଛି, ନାଜର ଭାର୍ଯ୍ୟା ତମ୍ବା-ତୁଳସୀ ଧରି ମିସଲ ଉପରେ କହୁତ ! ମୁଁ ନିର୍ଦ୍ଦୋଷ, ଖଲାସ ପାଇବି । ମାଲ ଘରୁ ନ ବାହାରିଲେ କେହି ସଜା ପାଏନାହିଁ ।

## ମାମଲା ଫଏସଲ ଓ ସେସନ ଜଜ୍‌ଙ୍କ ରାୟ

ସରକାର ତରଫରୁ ସାକ୍ଷୀ ଏବଂ ଆସାମୀମାନଙ୍କର ଜମାନବନ୍ଦି ଶେଷହୋଇଛି । ସରକାରୀ ଓକିଲ ପ୍ରମାଣ କରାଇଲେ, ଆସାମୀମାନେ ଦୋଷୀ । କେବଳ ଚିତ୍ରକଳା ପକ୍ଷରୁ ଜଣେ ଅଳ୍ପବୟସିଆ ଜୁନିଅର ଟୋକାଳିଆ ଓକିଲ ନିଯୁକ୍ତ ଥିଲେ । ସେ ଢେର୍‌ଗୁଡ଼ାଏ ବକାବକି କଲେ । ସାହେବଙ୍କଠାରୁ ଧମକପାଇ ବକ୍ତୃତା ଶେଷକଲେ । ସେ ପ୍ରମାଣ କରାଇବାପାଇଁ ଚେଷ୍ଟା କଲେ—ତାଙ୍କ ମକ୍‌କେଲ ଗୋଟିଏ ନିତାନ୍ତ ସରଳା

ଅବଳା, ପରିଶ୍ରମ କରି ପେଟ ପୋଷେ, ଅତି ସାଧୁ ପବିତ୍ର ଭାବରେ ଦିନ କଟାଏ । ତାହା ବିପକ୍ଷରେ ଆଖିଦେଖା ପ୍ରମାଣ ଅଭାବ, ଆଉ ମଧ୍ୟ ତା ଘର ଭିତରୁ ମାଲ ବରାମଦ ହୋଇନାହିଁ । ସୁତରାଂ ସେ ନିର୍ଦ୍ଦୋଷ, ଖଲାସ ପାଇବାର ଯୋଗ୍ୟା ।

ମାମଲାର ଶେଷ ହୁକୁମ ସମୟରେ ହାକିମ କଚେରିରେ ଉପସ୍ଥିତ ହୋଇ ରାୟ ପଢ଼ି ଶୁଣାଇଲେ । ଆସାମୀ ଦୁଇଜଣ ଆଗରେ ଠିଆହୋଇଛନ୍ତି ।

ହାକିମଙ୍କ ରାୟର ସାରାଂଶ ହେଲା—

''ନଂ ୧ ଆସାମୀ ନାଜର ନଟବର ଦାସ ଏ ମାମଲାରେ ନିର୍ଦ୍ଦୋଷ । ସେ ନିଜେ ସରକାରୀ ଟଙ୍କା ଆତ୍ମସାତ୍ କରିନାହିଁ, ତେବେ ତାହାର ଗଫଲତିରେ ଅବଶ୍ୟ ଟଙ୍କା ନଷ୍ଟହୋଇଛି । ଏ କ୍ଷେତ୍ରରେ ସେ ନିର୍ଦ୍ଦୋଷରେ ଖଲାସ, ମାତ୍ର ସରକାରୀ ଟଙ୍କା ତାହାଠାରୁ କିମ୍ବା ତାହାର ସମ୍ପତ୍ତିରୁ ଆଦାୟ କରିବା ଉଚିତ୍ ।

ନଂ ୨ ଆସାମୀ ପ୍ରଭୁଦୟାଲ ଭଗତ ଗୋଟାଏ ଭୟଙ୍କର ବଦ୍‌ମାସ୍ ଲୋକ ମାତ୍ର ସେ ଯେ ସ୍ଥଳେ ଫେରାର ହୋଇଅଛି, ତାହା ସମ୍ବନ୍ଧରେ କୌଣସି ହୁକୁମ ହୋଇନପାରେ । ନଂ ୩ ଆସାମୀ ରାଘବ ମହାନ୍ତି ଗୋଟାଏ ନିତାନ୍ତ ବୋକା ଲୋକ । ତାହାର ନିଜ କର୍ମର ଦାୟିତ୍ୱ କିଛି ବୁଝିବାକୁ ତାହାର ଜ୍ଞାନ ନ ଥିଲା, କେବଳ ବଦ୍‌ମାସ୍‌ମାନଙ୍କ ପରାମର୍ଶରେ ପଡ଼ି ଟଙ୍କା ଚୋରିକରିଛି । ଅତଏବ ଆମ୍ଭେ ଦୟାକରି ତାହାକୁ ଅଳ୍ପ ଦଣ୍ଡ ଦେବାକୁ ଇଚ୍ଛା କରୁଁ । କଠିନ ପରିଶ୍ରମ ସହିତ ଏକ ବର୍ଷ ଜେଲଖାନାରେ ବନ୍ଦ କରି ରଖାଯାଉ ।

ନଂ ୪ ଆସାମୀ ଚିତ୍ରକଳା ବେଓୟା—ଏହି ଆସାମୀ ଭୟଙ୍କର ବୁଦ୍ଧିମତୀ, ଭୟଙ୍କର ଦୁଶ୍ଚରିତ୍ରା, ବଜାରୀ ସ୍ତ୍ରୀ ଅଟେ । ଚତୁରତାରେ ନାଜର ନଟବର ଦାସକୁ ଭୁଲାଇରଖିଥିଲା । ଏହି ଦୁଷ୍ଟା ସ୍ତ୍ରୀର ପରାମର୍ଶ ଓ କୌଶଳ ସାହାଯ୍ୟରେ ଅନ୍ୟାନ୍ୟ ଆସାମୀମାନେ ଚୋରି କରିପାରିଛନ୍ତି । ଅତି କୌଶଳରେ ବିଶ୍ବାସଘାତକତା କରି ନାଜର ବସାରୁ ଅଳଙ୍କାର ଚୋରାଇଆଣିଛି । ଅତଏବ ହୁକୁମ କରୁଅଛୁଁ କି କଠିନ ପରିଶ୍ରମ ସହିତ ପାଞ୍ଚବର୍ଷ ଜେଲଦଣ୍ଡ ଏବଂ ଦୁଇଶହ ଟଙ୍କା ଜୋରିମାନା କରାଯାଉ । ଜୋରିମାନା ଅସୁଲ ନ ହେଲେ ଅଧିକ ଏକ ବର୍ଷ ଜେଲରେ ରଖାଯାଉ ।

ଇତି

**ଜି. ଏ. ମେକ୍‌ଫର୍ସନ**

ସେସନ୍ ଜଜ୍, କଟକ